




# ଭଙ୍ଗା ଡେଣା ଓ ଅନ୍ୟାନ୍ୟ ଏସୀୟ କାହାଣୀ

ବେଲିଣ୍ଡେର ଧାନୋଆ

ନେହେରୁ ବାଳ ପୁସ୍ତକାଳୟ—50

# ଭଙ୍ଗା ଡେଣା ଓ ଅନ୍ୟାନ୍ୟ ଏସୀୟ କାହାଣୀ

ଲେଖକ

**ବେଲିଣ୍ଡେର ଧାନୋଆ**

ଚିତ୍ର

**ପୌଲିନ ଧାନୋଆ**

ଅନୁବାଦ

**ମହେଶ୍ୱର ମୂଳିଆ**





ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

1984 ( ଶକାବ୍ଦ 1906 )



REVISED PRICE Rs.5.00

THE BROKEN WING AND OTHER ASIAN TALES (*Oriya*)

Published by Director, National Book Trust, India, A-5, Green Park, New Delhi 110016 and printed by Gautam Packaging, B-29, Okhla Industrial Area, Phase I, New Delhi 110020



## ଭଙ୍ଗା ଡେଣା

(କୋରିଆ ପରୀ କାହାଣୀ)

ଜଣେ ବୁଢ଼ା ଥିଲେ । ତାଙ୍କର ତିନି ପୁଅ । ବଡ ଦୁଇ ପୁଅ ଦେଖିବାକୁ ଭାରି ଅସୁନ୍ଦର । ହେଲେ ସାନପୁଅଟି ଖୁବ୍ ସୁନ୍ଦର । କାମରେ ବି ସେମିତି ଧୁରନ୍ଧର । ସାନ ଇଲ୍‌ଚୁଙ୍ଗ ଏତେ ଖଟେ ଯେ ତା' ଦେହରେ ଖାଲି ଚମ ଆଉ ହାଡ ଦିଶୁଥାଏ । ବୁଢ଼ା ସବୁ ପୁଅଙ୍କ ଭିତରୁ ଇଲ୍-ଚୁଙ୍ଗକୁ ବେଶି ଅଦର କରୁଥିଲେ । ସେଇଥିପାଇଁ ଅନ୍ୟ ଦି ପୁଅ ରାଗ ଆଉ ହିଂସାରେ ଜଳି ଯାଉଥାନ୍ତି ।

ଦୁର୍ଭାଗ୍ୟକୁ ବୁଢ଼ାଙ୍କର ଦିନେ କାଳ ହୋଇଗଲା । ଇଲ୍‌ଚୁଙ୍ଗକୁ ଏଣିକି ତାର ଦୁଇ ଦୁଷ୍ଟ ଭାଇଙ୍କ ଦୟା ଉପରେ ରହିବାକୁ ହେଲା । ବାପାଙ୍କ ମୃତ୍ୟୁରେ ପିଲାଟି ବିଚରା ଦୁଃଖରେ ଭାଙ୍ଗି ପଡିଲା । ଖାଲି କାନ୍ଦିବାକୁ ଲାଗିଲା ।

ଏହା ଦେଖି ବଡଭାଇ ଟଙ୍ଗଟଙ୍ଗ ରାଗି ଯାଇ କହିଲା, "ହେଃ, ସକେଇବା ବନ୍ଦକର ।"

ମଝିଆ ଭାଇ ସାଲସାରୀ ତା' କଥାକୁ ଦୋହରେଇ କହିଲା, "ହେଃ, ସକେଇବା ବନ୍ଦକର ।"

ସାଲସାରୀ ଭାରି ନିର୍ବୁଦ୍ଧିଆ । ସେ ନିଜେ ତ କିଛି ଚିନ୍ତା କରେ ନା । ଟଙ୍ଗଟଙ୍ଗ ଯାହା କହେ, ସେଇ କଥାକୁ ସେ ସବୁବେଳେ ଦୋହରାଏ ।

"ତୋର ଏ ଅଲଗା ମୁହଁଟା ଚାହିଁବାକୁ ମୋର ମୋଟେ ଇଚ୍ଛା ହେଉନି ।" ରାଗରେ ଟଙ୍ଗଟଙ୍ଗ କହି ଚାଲିଥାଏ ।

ସାଲସାରୀ ବି ଆରମ୍ଭ କଲା, "ତୋର ଏ ଅଲଗା"-- ତା କଥା ସରିନାହିଁ ଟଙ୍ଗଟଙ୍ଗ ଇଲ୍‌ଚୁଙ୍ଗର ବେକକୁ ଧରି ପଦାକୁ ଠେଲି ଦେଲା । ପୁଣି ତା ଉପରକୁ ଶୁଖିଲା ରୁଟି ଖଣ୍ଡେ ଫିଙ୍ଗି କହିଲା, "ନେ, ଏହାକୁ । ବାପ ସମ୍ପତ୍ତିରୁ ଯେତିକି ଭାଗ ତୁ ପାଇଥାନ୍ତୁ ଏ ରୁଟି ଖଣ୍ଡିକ ତା'ଠୁ ଅଧିକ ।"

ଏହା କହି ଦି ଭାଇ ଯାକ ହାତ ଧରାଧରି ହୋଇ ଘର ଭିତରକୁ ଚାଲିଗଲେ । ବିଚରା ଇଲ୍‌ଚୁଙ୍ଗ ଯେତେ କାକୁତି ମିନତି ହେଲା, ସେମାନେ ହସି ଉଡାଇଦେଲେ ।

ଇଲ୍‌ଚୁଙ୍ଗ ଭାବିଲା, ତା'ର ଦୁଷ୍ଟ ଭାଇମାନଙ୍କ ପାଖରେ କାକୁତି ମିନତି ହେବା ବୃଥା । ସେଇଠୁ ସେ ପାଖ ଜଙ୍ଗଲ ଆଡକୁ ଚାଲିବାକୁ ଲାଗିଲା । ସେ ତ ଭାରି ଚତୁର ଆଉ ବୁଦ୍ଧିମାନ ପିଲା । ସେଇ ଜଙ୍ଗଲ ଭିତରେ ଛୋଟ କୁଡିଆଟିଏ କରିବାପାଇଁ କିଛି କାଠ ଆଉ ନଡା ଯୋଗାଡ କଲା । ନିଜର ଆଶ୍ରା ଲାଗି ଚାରେଟି ମଜବୁତ କାନ୍ଥ ଆଉ ପରିଷ୍କାର ଛପର କରିବାକୁ ତାକୁ ବେଶି ବେଳ ଲାଗିଲା ନାହିଁ ।

ଇଲ୍‌ଚୁଙ୍ଗର ସ୍ୱଭାବ ତ ସବୁବେଳେ ହସ ହସ । ବଣରୁ ଚେରମୂଳ, କୋଳି ଯାହା ପାଏ, ତାକୁ ଖାଇ ବେଶ୍ ଖୁସିରେ ଚଳିଯାଏ । ହେଲେ ଆଗକୁ ଆସୁଚି ଶୀତ ଦିନ । ସେ ଜାଣେ ଛୋଟିଆ ଘରଟିରେ ଭାରି ଥଣ୍ଡା ହେବ । ତାକୁ ବହୁତ ହିନସ୍ତା ହେବାକୁ ପଡିବ ।

ଦିନକର ଇଲ୍‌ଚୁଙ୍ଗକୁ ଭାରି ଭୋକ ହେଉଥାଏ । ସକାଳଟା ଯାକ ଖୋଜି ଖୋଜି ବହୁ କଷ୍ଟରେ ଉପର ଓଳି ମୁଠାଏ କୋଳି ଯୋଗାଡ କଲା । ଏଇତକ କୋଳି ତାକୁ କେଉଁଠୁ ଅଣ୍ଟିବ । ବିଚରା ବିକଳ ହୋଇ ସେ କୋଳିଗୁଡାକୁ ଅନେଇ ରହିଲା । ଶେଷକୁ ଦୀର୍ଘ ନିଃଶ୍ୱାସଟାଏ ପକେଇ ଘର ଆଡକୁ ସେ ଗୋଡ କାଢିଲା । ଯାଉ ଯାଉ ବାଟରେ ଦେଖିଲା, ସାମନାରେ ତାର ଚଢେଇଟିଏ ଆଘାତ ପାଇ ପଡିଚି ।

ଇଲ୍‌ଚୁଙ୍ଗ ନଇଁପଡି ଚଢେଇଟିକୁ ଚାହିଁଲା । ଅତି ବିକଳରେ ତା' ଡେଣା ଯୋଡିକ ଛାଟିପିଟି ହେଉଛି । ସେ ସତରେ ଡରି ଯାଇଥାଏ, ପିଲାଟା କାଳେ ତାକୁ ଆଘାତ କରିବ । ହେଲେ ଇଲ୍‌ଚୁଙ୍ଗ ଆସ୍ତେ ଆସ୍ତେ ତା' ମୁଣ୍ଡଟିକୁ ଟେକି ଦେଖିଲା ଚଢେଇଟିର ଗୋଟିଏ ଡେଣା ଭାଙ୍ଗି ଯାଇଚି ।

ଇଲ୍‌ଚୁଙ୍ଗ ଟିକି ଚଢେଇଟି ନେଇ ଘରକୁ ଧାଇଁଲା । ଘାସରେ ତା' ପାଇଁ ନରମ ଶେଯଟିଏ କଲା । ଆଗପଛ କିଛି ବିଚାର ନ କରି ନିଜେ ଖାଇବା ପାଇଁ ସାଇତି ରଖି-ଥିବା କୋଳିତକ ଚଢେଇକୁ ଖୁଆଇ ବସିଲା ।

ତା'ର ଆଦର ଯତ୍ନରେ ଚଢେଇଟି ଖୁବ୍ ସହଳ ସୁସ୍ଥ ହୋଇ ଉଠିଲା । ଦିନେ ସକାଳେ ସେ ଉଡି ଚାଲିଗଲା । ଚଢେଇ ଉଡି ଯିବାରୁ ତାର ମନ ଭାରି ଦୁଃଖ ହେଲା । ଏତେଦିନକେ ସାଥିଟିଏ ପାଇଥିଲା । ତାକୁ ପୁଣି କେତେ ଶରଧା କରୁଥିଲା ।

ତହିଁଆର ଦିନ ଦୁଆର ସାମନାରେ ଚିହା ଚେଁ ଚେଁ ସ୍ୱର ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲା । ବାହାରକୁ ଅନେଇ ଦେଖିଲା, ତାର ସାଥି ଚଢେଇଟି ଫେରି ଆସିଚି ।

ଥଣ୍ଟରେ ତାର ଛୋଟ ମଞ୍ଜିଟିଏ । ଇଲ୍‌ଚୁଙ୍ଗର ଗୋଡ ତଳେ ମଞ୍ଜିଟି ପକେଇ ଦେଇ ଚଢେଇଟି କହିଲା, "ତୁମର ଦୟାପଣ ପାଇଁ ବହୁତ ଧନ୍ୟବାଦ ଦେଉଚି ।

ନିଅ ଏ ମଞ୍ଜି ଟି ମାଟିରେ ପୋତିଦିଅ । ଦେଖିବ, ତମର ଭାଗ୍ୟ କେମିତି ବଦଳି ଯିବ ।"

ଇଲ୍‌ଚୁଙ୍ଗ କ'ଣ ପଚାରିବାକୁ ଯିବା ଆଗରୁ ଚଢେଇଟି କୁଆଡେ ଉଡିଗଲା । ସେଉଠୁ ସେ ମଞ୍ଜି ଟି ଗୋଟେଇ ଦୁଆର ଆଗରେ ତାକୁ ପୋତି ଦେଲା ।

ତହିଁଆର ଦିନ ସକାଳେ ସେ ଯେତେବେଳେ ଉଠିଲା, ଦେଖିଲା ଘରଟା ସେପାକେ ଅନ୍ଧାର । ଭାବିଲା, ଆଜି ବୋଧେ ସେ ଖୁବ୍ ସକାଳ ଉଠି ପଡିଛି । ସୂର୍ଯ୍ୟ ଉଇଁଲାଣି କି ନା, ଦେଖିବାକୁ ଇଲ୍‌ଚୁଙ୍ଗ ଶେଯରୁ ଉଠି ବାହାରକୁ ଅନେଇଁଲା । ଚାହିଁବା କ୍ଷଣି ବଡ ନରମ ପତ୍ରଟିଏ ତା ମୁହଁରେ ବାଜିଗଲା । ଦେଖିଲା, ଆଗରେ ତା'ର ଜୁଡାଏ ସବୁଜପତ୍ର । ପତ୍ର ଗୁଡିକର ମଝିରେ ବାଟ କାଟି ଯାଉ ଯାଉ ସରୁ ଲଟା ଗୁଡା ତା' ମୁହଁରେ ଗୁଡେଇ ହୋଇଗଲା । କାନକୁ ତାର ସଲ ସଲ ଲାଗିଲା ।

"ଆରେ ଏତ କ'ଣ ଲାଉଗଛ !" ସେ ଆଶ୍ଚର୍ଯ୍ୟ ହୋଇଗଲା ।

ଏତେ ବଡ ଗଛ ଆଗରୁ ସେ କେଉଁଠି ଦେଖି ନ ଥିଲା । କୁଡିଆ ଘରଟିର ଚଲୁ ଉପର ଯାଏ ଗଛ ଲଟେଇ ଥାଏ । ଇଲ୍‌ଚୁଙ୍ଗର ଆଖି ଯୋଉପାକେ ପାଇବ, ସେଇ ଯାଏ ଲଟା ବିଛେଇ ହୋଇ ରହିଥିଲା । ମୋଟା ମୋଟା ଶାଗୁଆ ପତ୍ର ଭିତରେ ଓହଳି ଥାଏ, ବଡବଡ ରସାଳିଆ ଲାଉ ।

ଇଲ୍‌ଚୁଙ୍ଗର ଆନନ୍ଦ କହିଲେ ନ ସରେ । ଯାହା ହେଉ, ଏଣିକି ଆହାର ପାଇଁ ତାକୁ ଆଉ ବଣକୁ ଖୋଜି ଯିବାକୁ ହେବ ନାହିଁ । ଏହା ଭାବି ଇଲ୍‌ଚୁଙ୍ଗ ଗୋଟିଏ ଲାଉ ତୋଳିଲା । ତାକୁ ଧରି କୁଡିଆକୁ ଆସିଲା ।



ଲାଉଟି ଯେମିତି ସେ କାଟିଚି ତା' ଭିତରୁ ଝଲସି ଉଠିଲା ଏକ ତୋଫା ଆଲୁଅ । ଲାଉଟି ବି ଫାଳ ହୋଇଗଲା । ଇଲ୍‌ଚୁଙ୍ଗ ତାକୁ ଦେଖି ତ ଏକବାରେ ତାଟକା । ସେଇ ଲାଉ ଫାଳ ଭିତରୁ ସୁଅଭଳି ସୁନାର ମୋହର ଗୁଡା ତଳେ ଅଜାଡି ହୋଇ ପଡିଲା ।

ଗଛରେ ପୁଣି ଫଳିଚି ଅସରନ୍ତି ଲାଉ । ସବୁଥିରେ ସୁନାମୋହର ଭରପୁର !!

ନିଜର ଏ ସୌଭାଗ୍ୟ ଦେଖି ଇଲ୍‌ଚୁଙ୍ଗର ଆନନ୍ଦ କହିଲେ ନ ସରେ । ଖୁସିରେ ସେ ଗଛରୁ ଆଉ ଦୁଇଟି ଲାଉ ତୋଳିଲା । ତାକୁ ଧରି ଚାଲିଲା ନିଜ ଭାଇ ଘରକୁ । ଭାଇମାନେ ଯିନା ତା' ପ୍ରତି ଏତେ ନିଷ୍ଠୁର । ହେଲେ ତା'ର ଏ ସୁଖରେ ଭାଇମାନଙ୍କୁ ଭାଗୀଦାର କରିବାକୁ ମନଟା ତାର ଉଚ୍ଛନ୍ନ ହୋଇ ପଡିଥାଏ ।

ସେତେବେଳେ ଟଙ୍ଗଟଙ୍ଗି ଆଉ ସାଲସାରୀ ଶେଯରେ ଶୋଇଥାନ୍ତି । ଇଲ୍‌ଚୁଙ୍ଗ ଉପହାର ଧରି ସେମାନଙ୍କ ପାଖରେ ପହଞ୍ଚିଲା । ଦି'ଭାଇ ଗାଢ଼ ନିଦରେ ଶୋଇ ଯୋରରେ ଘୁଙ୍ଗୁଡି ଛାଡୁଥାନ୍ତି ।

ଇଲ୍‌ଚୁଙ୍ଗ ଲାଉ ଦୁଇଟି ମେଜ ଉପରେ ଥୋଇ ଖୁସିରେ ଡାକ ଛାଡିଲା, ଭାଇ ଦେଖିଲ ତମମାନଙ୍କ ପାଇଁ କ'ଣ ଆଣିଚି ।''

ଟଙ୍ଗଟଙ୍ଗି ଗୋଟିଏ ଆଖି ଖୋଲିଲା । ଲାଉ ଉପରେ ତା' ଆଖି ଯେମିତି ପଡିଚି ହୋ ହୋ ହୋଇ ହସି ଉଠି କହିଲା,''ଆରେ, ଇଏ କ'ଣ ? ତୁଚ୍ଛା ଲାଉଗୁଡା !!''

ସାଲସାରୀ ବି ହାଇମାରି ଆଖିପତା ଖୋଲିଲା । ସେ ବି ସେମିତି କହି ଉଠିଲା 'ଆରେ, ଇଏ କ'ଣ-- ।''

ଟଙ୍ଗଟଙ୍ଗି କହିଲା, ''ଏ ଲାଉଗୁଡା ଆମର ଦରକାର ନାହିଁ । ଆମ ବଗିଚାରେ ତ ଲାଉ ଭର୍ତ୍ତି ହୋଇଚି ।''

ସାଲସାରୀ ବି ସେଇ କଥାକୁ ଦୋହରେଇ କହିଲା, ''ଏ ଲାଉଗୁଡା--''

ହେଲେ ଇଲ୍‌ଚୁଙ୍ଗ ବାଧ୍ୟ ହେଇ କହିଲା, ''ଦେଖ ଭାଇ ଟଙ୍ଗଟଙ୍ଗି , ଇଏ ସାଧାରଣ ଲାଉ ନୁହଁ ।''

ଏହା କହି ସେ ଗୋଟି ଏ ଲାଉ କାଟିବା ମାତ୍ରେ ସୁନା ଗୁଡା ସେଥିରୁ ଅଜାଡି ହୋଇ ପଡିଲା ।

ଏହା ଦେଖି ଟଙ୍ଗଟଙ୍ଗି ଆଉ ସାଲସାରୀ ଖୁବ୍ ଜୋରରେ ସେଠାକୁ ଛୁଟି ଆସିଲେ । ଜୀବନରେ ସେମାନେ ଏତେ ବେଗରେ କେବେ ଧାଇଁ ନଥିବେ । ସେଠି ପହଞ୍ଚି ଲୋଭରେ ସେମାନେ ସୁନା ଗୋଟେଇବାରେ ଲାଗିଗଲେ । ବଡ ଆଗ୍ରହରେ ସେମାନେ ଅନ୍ୟ ଲାଉଟି କାଟିଲେ । ଆଂଗୁଠି ବାଟେ ସୁନା ଗୁଡା ଅଜାଡି ହୋଇ ପଡିଲା ।

ଏହାଦେଖି ସେମାନେ ଖୁସିହୋଇ କହିବାକୁ ଲାଗିଲେ, ''ହେଃ ହେଃ, ଅଳ୍ପ ପରିଶ୍ରମରେ ବହୁତ ଖେଳ !!''

ଇଲ୍‌ଚୁଙ୍ଗ ଭାଇମାନଙ୍କୁ ସେଇ ଢଂଗାଡେଣା ଚଢେଇଟିର କଥା କହିଲା । ଏହା ଶୁଣି ସେମାନେ ହିଂସାରେ ଜଳିବାକୁ ଲାଗିଲେ ।

ଟଙ୍ଗଟଙ୍ଗି ମୁଣ୍ଡ ହଲାଇ ମନେ ମନେ କ'ଣ ଭାବିବାକୁ ଲାଗିଲା । ଇଲ୍‌ଚୁଙ୍ଗ ସେଠି ସେମିତି ଛିଡା ହୋଇ ରହିଥିବାର ଦେଖି ତାକୁ ଧକ୍କାଟାଏ ପକେଇ କହିଲା

"ପଳା ଏଠୁ, ତୋ ସହିତ ଆଗ ଭଳି ଆମର କିଛି ସମ୍ପର୍କ ନାହିଁ ।"

ଇଲ୍ ଚୁଙ୍ଗ ଦୁଃଖ ମନରେ ସେଠୁ ଫେରି ଆସିଲା । ସେ ଆଶା କରିଥିଲା, ଭାଇମାନେ ଆଦର କରି ତାକୁ ଘରକୁ ପୁଣି ଫେରି ଆସିବାକୁ କହିବେ । ହେଲେ ଦେଖିଲା ଏବେ ବି ସେମାନେ ତାକୁ କେତେ ଘୃଣା କରୁଛନ୍ତି ।

ଇଲ୍ ଚୁଙ୍ଗ ଯିବା ପରେ ଟଙ୍ଗଟଙ୍ଗି ଡାକ ଛାଡ଼ିଲା, "ସାଲ-ସାରୀ । କୁଆଡେ଼'ଗଲୁ ?"

ଘର ଚଟାଣ ପାଖରେ ସେ ଘୁଙ୍ଗୁଡ଼ି ଶବ୍ଦ ଶୁଣିବାକୁ ପାଇଲା । ଦେଖିଲା, ତାର ଅଳସୁଆ ଭାଇ ସୁନା ଉପରେ ମୁଣ୍ଡ ଥୋଇ ଶୋଇ ଯାଇଚି ।

ତା' ଉପରେ ସେ ଗୋଇଠା ଟାଏ ପକାଇଲା । ଯନ୍ତ୍ରଣାରେ ଛାଟିପିଟି ହୋଇ ସାଲସାରୀ ତା' ଗୋଡ ଉପରକୁ ଡେଇଁ ପଡ଼ିଲା ।

ଟଙ୍ଗଟଙ୍ଗି କହିଲା, "ଶୁଣ୍ ବୋକା । ମୁଣ୍ଡଟା ଟିକିଏ ନୁଆଇଁ ପକା, ତା' ହେଲେ ମୋ କଥା ଶୁଣି ପାରିବୁ ।"

ଏଇ ଦେଖ, ଟଙ୍ଗଟଙ୍ଗି କେତେ ଛୋଟ ଓ ମୋଟା ଆଉ ସାଲସାରୀ କେତେ ଡେଙ୍ଗା ହୁଣି ପଡଲା ।



ସାଲସାରୀ ସବୁବେଳେ ଆପତ୍ତି କରେ, ତେଳେ ଏତେ ଦୂରରୁ ସେ ଟଙ୍ଗଟଙ୍ଗିର କଥା' ଆଦୌ ଶୁଣିପାରୁ ନାହିଁ । ଟଙ୍ଗଟଙ୍ଗିର ଆଦେଶ ମାନି ସାଲସାରୀ ବାଧ୍ୟ ପିଲାଟି ପରି ନଇଁ ପଡ଼ିଲା ଆଉ ପରିଶ୍ରମର ପୁରସ୍କାର ସ୍ୱରୂପ ଖାଇଲା ନାକ ମୋଡ଼ା । ଟଙ୍ଗଟଙ୍ଗିର ସ୍ୱଭାବ ତ ତାକୁ ଭଲରୂପେ ଜଣା । ସେଥିପାଇଁ ତାର ଏମିତି ଖରାପ ବ୍ୟବହାରରେ ସେ କେବେ ଆପତ୍ତି କରେନା । ଏ ଦୁହିଁଙ୍କ ଭିତରୁ ମୋଟା ଲୋକଟି ବେଶି ବୁଦ୍ଧିଆ । ସାଲସାରୀ



ଅଯଥାରେ ମୁଣ୍ଡ ଖେଳାଇ କଷ୍ଟ ପାଇବା ଅପେକ୍ଷା ନାକ ମୋଡ଼ା ସହି ବଡ଼ଭାଇର ଆଦେଶ ମାନି ନେଉଥିଲା । ସତରେ ଦୁଇଭାଇଙ୍କର ମନ ବେଶ୍ ମିଶୁଥିଲା ।

ଟଙ୍ଗଟଙ୍ଗି ତା ବୋକା ଭାଇକୁ ଆଦେଶ ଦେଲା, ବଣକୁ ଯାଇ ଭଙ୍ଗା ଡେଣା ଥିବା ଚଢ଼େଇ ଖୋଜି ଆଣ୍ । ତାକୁ ପୁଣି ଚେତେଇ ଦେଇ କହିଲା, ଯଦି ଖାଲି ହାତରେ ଫେରୁ, ତୋର କପାଳ ଫାଟିଲା ବୋଲି ଜାଣିବୁ ।

ସାଲସାରୀ ଚାଲିଯିବା ପରେ ଟଙ୍ଗଟଙ୍ଗି ସୁନାଯାକ ଗଣିବାକୁ ବସିପଡ଼ିଲା ।

ସଞ୍ଜ ହୋଇ ଆସିବାରୁ ସାଲସାରୀ ବ୍ୟସ୍ତ ହୋଇ ପଡ଼ିଲା । ଖୋଜି ଖୋଜି ଏ ଯାଏ ଗୋଟିଏ ହେଲେ ଭଙ୍ଗା ଡେଣା ଥିବା ଚଢ଼େଇର ଦେଖା ମିଳିଲା ନାହିଁ । ଆଖିରୁ ତାର ଖାଲି ପାଣି ଗଡ଼ିବାକୁ ଲାଗିଲା । ଆହତ ପକ୍ଷୀ ନ ନେଇ ଘରକୁ ଫେରିଲେ ତା' ଉପରେ ଯେଉଁ ମାଡ ଚଢ଼ିବ, ସେ କଥା ଭାବିଲା ବେଳକୁ ତା' ନାକ ପୋଡ଼ି ଉଠିଲା ।

ଶେଷକୁ ଅତି ଉତ୍ସାହରେ ସେ ଗୋଟିଏ ଉଡନ୍ତା ଚଢ଼େଇକୁ ଧରିଲା । ସଙ୍ଗେ ସଙ୍ଗେ ତାର ଗୋଟିଏ ଡେଣା ଭାଂଗି ପକେଇଲା । ବିଜୟ ଦର୍ପରେ ଚଢ଼େଇଟିକୁ ଧରି ସେ ଟଙ୍ଗଟଙ୍ଗି ପାଖରେ ଆସି ପହଞ୍ଚିଲା । ଆଉ ଚଢ଼େଇଟି କେମିତି ଆଣିଚି, ତା ଆଗରେ ସବୁ ଗପିଗଲା ।

ଆଗ୍ରହର ସହିତ ନାକଟି ମୋଡ଼ିଦେଇ କହିଲା, ''ଅନ୍ୟ ଡେଣାଟିକୁ ମଧ୍ୟ ଭାଂଗି ଦେଲେ ହେବ ।''

ସାଲସାରୀର ନାକ ଧରିବାକୁ ଗଲାବେଳେ ଟଙ୍ଗଟଙ୍ଗିର ପେଟ ଥଲ ଥଲ ହୋଇ ଉଠିଲା ।

ଦି ଭାଇ ଯାକ ଘାସ ଲଟା, କୋଳି ଖୁଆଇ ଚଢ଼େଇଟିର ବହୁତ ସେବା କଲେ । ହେଲେ ସେ ଭଲ ହେବାକୁ ଅନେକ ବେଳ ଲାଗିବା ଦେଖି ତାକୁ ଗାଳି ଦେବାକୁ ଲାଗିଲେ ।

ଶେଷରେ ବିଚରା ଚଢ଼େଇଟି ସୁସ୍ଥ ହୋଇ ଉଡ଼ିଗଲା । ଏହାଦେଖି ଦୁଇ ଲୋଭୀ ଭାଇଙ୍କର ଆନନ୍ଦ କହିଲେ ନ ସରେ । ତହିଁ ଆର ଦିନ ଚଢ଼େଇଟି ଥଣ୍ଟରେ ମଞ୍ଜିଟିଏ ଧରି ଫେରି ଆସିଲା । ସେଇଟି ଟଙ୍ଗଟଙ୍ଗିର ପାଦତଳେ ପକାଇ ଦେଇଗଲା ।

ଦି'ଭାଇ ଅତି ଯତ୍ନରେ ମଞ୍ଜିଟିକୁ ନେଇ ପୋତିଦେଲେ । ଫଳ କଥା ଭାବି ଭାବି ସାରା ରାତି ସେମାନଙ୍କ ଆଖିକୁ ନିଦ ଆସିଲା ନାହିଁ । ତା' ପରଦିନ ବିରାଟ ଗଛ ଦେଖି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ମହା ଖୁସିରେ ସେମାନେ ଗଛରୁ ମନଇଚ୍ଛା ଲାଉ ତୋଳି ଘର ଭିତରେ ଜମା କରିବାକୁ ଲାଗିଗଲେ । ରୋଷେଇ ଘରୁ ଗୋଟିଏ ବଡ ଛୁରୀ ଆଣି ଆଗେ ଗୋଟିଏ ଲାଉ କାଟିଲେ ।

ହେଲେ, ଲାଉ ଭିତରୁ ଝଲମଲ ସୁନା ବଦଳରେ ଇଏ କ'ଣ ? ଖାଲି ଗୁଡ଼ାଏ ସାପ, ଝିଟିପିଟି ଆଉ ବେଙ୍ଗ । ଦି' ଭାଇ ଭୟରେ ଥରିବାକୁ ଲାଗିଲେ । ଏ ଭୟଙ୍କର ଦୃଶ୍ୟ ଦେଖି ଛାନିଆରେ ସେମାନେ ସେ ଲାଉଟି ଫିଙ୍ଗି ଦେଇ ଆଉ ଗୋଟିଏ କାଟିଲେ । ଗୋଟିକ ପରେ ଗୋଟିଏ ଯେତୋଟି ଲାଉ କାଟିଲେ ସବୁଥିରୁ ବାହାରିଲେ ସେଇ ଜନ୍ତୁଗୁଡ଼ା ।

ଚାହୁଁ ଚାହୁଁ ସାରା ଘରଟା ସାପରେ ଭରି ହୋଇଗଲା । ସେଗୁଡାକ ସେମାନଙ୍କ ଗୋଡରେ ଗୁଡେଇ ହୋଇଗଲେ । ଦୁଇଭାଇ ଭୟରେ ଚିତ୍କାର କରି ଛାଟିପିଟି ହୋଇ ଦୌଡିବାକୁ ଲାଗିଲେ ।

ଧାଇଁ ଧାଇଁ ସେମାନେ ଜଙ୍ଗଲ ପାର ହୋଇ ଦେଶ ଛାଡି ଚାଲିଗଲେ । ସେଇ ଦିନଠୁ ସେମାନଙ୍କର ଆଉ ଦେଖା ନାହିଁ ।





# କୋପୀ ରାଜା

(ଫିଲିପାଇନସ୍)

ଦକ୍ଷିଣ ଲୁଜନ ପାହାଡ ଭିତରେ ତମାଖୁ ଚାଷୀମାନଙ୍କର ଦେଶ । ବହୁ ବର୍ଷ ତଳେ ସେ ରାଜ୍ୟରେ ଜଣେ ରାଜା ରାଜୁତି କରୁଥିଲେ । ତାଙ୍କ ନାମ ହରି କା ବୁସକିଦ୍ । ସେ ଥିଲେ ଖୁବ୍ ଚତୁର । ତାଙ୍କ ରାଜୁତି କାଳରେ ଲୋକେ ଧନୀ ଓ ସମୃଦ୍ଧିଶାଳୀ ଥିଲେ ।

ତମାଖୁ ଚାଷୀଙ୍କ ପାଖକୁ ଯିବାକୁ ରାଜା ଆଦୌ ଘୃଣା କରୁ ନଥିଲେ । ସେମାନଙ୍କୁ ସେ ତମାଖୁ ଚାଷର ଭଲ ଭଲ କୌଶଳମାନ ଶିଖାଇ ଦେଉଥିଲେ । ସେଥିପାଇଁ ସେ ଦେଶରେ ସବୁଠୁ ଭଲ ଆଉ ବହୁତ ଫସଲ ହେଉଥାଏ ।

ଆଖପାଖ ରାଜ୍ୟର ସ୍ୱରିଆତ୍ ଲୋକେ ରାଜା ହରି କା ବୁସକିଦ୍‌ଙ୍କ ଦେଶକୁ ଆସି ସେମାନଙ୍କ ଜିନିଷପତ୍ର ବଦଳରେ ଦାମିକା ତମାଖୁ ନେଇ ଯାଉଥାନ୍ତି ।

ଦିନେ ରାଜା ରାଇଜଯାକର ସବୁ ମୁଖିଆ ଲୋକଙ୍କୁ ଡକାଇ ଗୋଟିଏ ସଭା କଲେ । ସେମାନଙ୍କୁ କହିଲେ, "ମୁଁ ଦୂର ଯାତ୍ରାରେ ଯାଉଚି । କେବେ ଫେରିବି ଜାଣେନା । ପଡୋଶୀ ଓ ଦୂର ରାଜ୍ୟର ରାଜାମାନଙ୍କ ସଙ୍ଗେ ମୋର ବହୁତ କାମ ଅଛି । ସେଥିପାଇଁ ମୋତେ ଅନେକ ଦିନ ରହିବାକୁ ପଡ଼ିବ ।"

ତମାଖୁ ଅମଳ ଉତ୍ସବରେ ରାଜା ରହିବେ ନାହିଁ ଜାଣି ସଭିଙ୍କ ମୁହଁରେ ଦୁଃଖର ଛାଇ ଖେଳିଗଲା ।

ରାଜା କହିଲେ, "ମୁଁ ବି ଖୁବ୍ ଦୁଃଖିତ । ଅମଳ ଉତ୍ସବରେ ମୁଁ ଏଠି ରହିପାରୁ ନାହିଁ । ହେଲେ ସବୁ ଯେମିତି ଠିକ୍ ରୂପେ ଚାଲେ, ତୁମେ ସମସ୍ତେ ଦେଖିବ ବୋଲି ମୋର ପୂରା ଭରସା ରହିଚି । ମୁଁ ଯଦି ସହଳ ନ ଫେରେ, ଆସନ୍ତା ଫସଲ ଯେମିତି ଲଗାଯାଏ, ଦେଖିବ । ସବୁ ଥର ପରି ଫସଲ ଯେମିତି ଭଲ ହୁଏ, ଆଉ ଭଲ ତମାଖୁ ବୋଲି ଆମ ଦେଶର ଟେକ ରହେ ।

ତହିଁଆର ଦିନ ରାଜା ଯାତ୍ରାରେ ବାହାରି ଗଲେ । ସେ କୁଆଡେ ଯାଉଛନ୍ତି କେହି କହି ପାରିଲେ ନାହିଁ ।

କିଏ କହିଲା, "ପାହାଡ ସେପଟକୁ ସେ ଯାଉଛନ୍ତି ।" ଆଉ କିଏ କହିଲା, "ନା, ସମୁଦ୍ର ବାଟେ ସେ ପର ଦରିଆପାରି ଦେଶକୁ ଯାଉଛନ୍ତି । ସେ ଦେଶ ଏତେ ଦୂରରେ ଯେ ଚିଲ ଶାଗୁଣାଙ୍କ ଆଖି ବି ସେଠିକି ପାଇବ ନାହିଁ ।"

ହେଲେ କେହି ଠିକ୍ ରୂପେ କହିପାରିଲେ ନାହିଁ, ରାଜା କୁଆଡେ ଯାଉଛନ୍ତି । ସେ କଥା ରାଜା କାହାରି ଆଗରେ କହି ଯାଇ ନଥାନ୍ତି ।

ଅମଳ ବେଳ ଆସିଗଲା । ଫସଲ ଏତେ ଭଲ ହେବ ବୋଲି ଲୋକେ ଆଶା କରି ନ ଥିଲେ ।

ଏହାଦେଖି ସେମାନେ କହିଲେ, ଆମର ଉତ୍ତମ ରାଜା ଆମକୁ ଭଲ ଶିକ୍ଷା ଦେଇ ଯାଇଛନ୍ତି ।

ସେ ବର୍ଷ ସମସ୍ତେ ତମାଖୁ ଅମଳର ଖୁବ୍ ପ୍ରଶଂସା କଲେ । ରାଜା ହରି କା ବୁସକିଦ୍‌ଙ୍କ ରାଜ୍ୟର ପ୍ରଜାମାନେ ଆଗଠୁଁ ଆହୁରି ଅଧିକ ଧନୀ ହୋଇଗଲେ ।

ବଡ ବଡ ମାନେ କହିଲେ, "ଚମତ୍କାର । କିନ୍ତୁ ରାଜାଙ୍କ ଉପଦେଶକୁ ଆମେ କେବେ ଭୁଲିବା ନାହିଁ ।"

ସଙ୍ଗେ ସଙ୍ଗେ ସେମାନେ ପାହାଡ କଡେ କଡେ ଫସଲ ବୁଆ କାମରେ ଲାଗି ଗଲେ । ରାଜା ଯଦି ସେତେବେଳେ ସେମାନଙ୍କୁ ଦେଖିଥାନ୍ତେ, ସେମାନଙ୍କର କର୍ମନିଷ୍ଠା ଆଉ ପରିଶ୍ରମ ପାଇଁ ଗର୍ବ ଅନୁଭବ କରିଥାନ୍ତେ ।

ଦଶବର୍ଷ କାଳ ଲୋକେ କଠିନ ପରିଶ୍ରମ କଲେ । ପ୍ରତି ବର୍ଷ ପୂର୍ବ ବର୍ଷଠାରୁ ଅଧିକ ଭଲ ଫସଲ ହେଉଥିଲା । କିନ୍ତୁ ସେ ଯାଏ ରାଜା ଯାତ୍ରାରୁ ଫେରି ନଥାନ୍ତି । ଧୀରେ ଧୀରେ ଲୋକେ ତାଙ୍କୁ ପାଶୋରି ଯିବାକୁ ବସିଲେ । ଶେଷକୁ ସେ ଲୋକଙ୍କ ସ୍ମୃତିରେ କେବଳ ରହିଗଲେ ।

ସେତେବେଳେ ରାଜା ଯଦି ଫେରି ଆସିଥାନ୍ତେ, ନିଜ ରାଜ୍ୟକୁ ବି ଚ

ପାରିନ ଥିଲେ ମୁଁ ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ । କାରଣ ସେ ଯିବାବେଳେ ରାଜ୍ୟ ଯେତେ ଧନୀ ଥିଲା, ତାଠୁ ଦଶଗୁଣ ଅଧିକ ଧନୀ ହୋଇ ଯାଇଥିଲା । ଯେଉଁଠି ଛୋଟ କୁଡ଼ିଆ ଥିଲା, ସେଠି ଏବେ ବଡ଼ ବଡ଼ ଘରମାନ ହୋଇ ଯାଇଛି । ଲୋକେ ପିନ୍ଧିଛନ୍ତି ଖୁବ୍ ସୁନ୍ଦର ସୁନ୍ଦର ଲୁଗା ।

ସେଥିପାଇଁ ବୋଧେ ସବୁ ଘଟଣା ବଦଳିଗଲା । ତମାଖୁ ଚାଷୀମାନେ ଏଣିକି ଖେତରେ କାମ କରିବାକୁ ଘୃଣା କଲେ ।

ସେମାନେ କହିବାକୁ ଲାଗିଲେ, "ଖେତକୁ ଯାଇ କାଦୁଅରେ କାମ କରି ଆମର ଏ ସୁନ୍ଦର ଲୁଗାପଟା ନଷ୍ଟ କରିବା କ'ଣ ଠିକ୍ ହେବ ?"

ତମାଖୁ ଖେତ ଏଣିକି ଅବହେଳିତ ହୋଇ ପଡ଼ି ରହିଲା । ଯେଉଁ ତମାଖୁ ଖେତରେ ଦିନେ ସୁନା ଫସଲ ଫଳୁଥିଲା, ଏବେ ତାହା ଶୁଖିଲା ଆଉ ଧୂଳି ଧୂସରିଆ



ଦେଖାଗଲା । ଫସଲ ଅମଳ କମିଯିବାରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ । ତମାଖୁ କିଣିବାକୁ ଆସୁଥିବା ବେପାରୀମାନଙ୍କୁ ଲୋକେ କହିଲେ, "ଏ ବର୍ଷଟା ଭାରି ଖରାପ ବର୍ଷ ।"

ସତ୍ୟରେ ବର୍ଷଟା ଖରାପ । ହେଲେ ଚାଷର ଉନ୍ନତି ପାଇଁ କେହି କିଛି କଲେ ନାହିଁ । ନିଜନିଜର ଲୁଗାପଟା, ଧନସମ୍ପତ୍ତି ରଖିବାରେ ସମସ୍ତେ ବ୍ୟସ୍ତ ରହିଲେ । ତମାଖୁ ଖେତ ପ୍ରତି କେହି ଯତ୍ନ ନେଲେ ନାହିଁ ।

କେତୋଟି ବର୍ଷରେ ରାଜ୍ୟଟା ଗରିବରୁ ଆହୁରି ଗରିବ ହୋଇ ପଡ଼ିଲା । ବହୁ ଦିନ ଧରି ଖେତକୁ ହେଳା କରିବା ଫଳରେ ସବୁଠୁ କମ୍ ଅମଳ ବି ହେଲା ।

ସ୍ତ୍ରୀଲୋକମାନେ କହିବାକୁ ଲାଗିଲେ, "ଭୋକ ଉପାସରେ ଆମେ ମରି-ଯିବୁ ।"

ପୁରୁଷମାନେ ରାଗିଯାଇ କହିଲେ, "ଆମେ ତୁମଠୁ କ'ଣ ବେଶି ଭଲରେ ଅଛୁ ?"

ଏତେ ସବି ହେବା ପରେ ବି ସେମାନେ ଚାଷ କରିବା ବଦଳରେ ଖାଲିଟାରେ ବସି କଳି କରିବାରେ ଲାଗିଲେ । ଧୀରେ ଧୀରେ ସୁନ୍ଦର ଘର ଗୁଡାକ ଅସୁନ୍ଦର ଦିଶିଲା । ତଥାପି ଲୋକେ ଅଳସୁଆ ହୋଇ ବସି ରହିଲେ ।

ଭାବିଲି, ଭୂମିକମ୍ପ ଛଡ଼ା ଆଉ କେହି ଏ ଲୋକଗୁଡାକର ଅଳସୁଆମି ଛଡ଼ାଇ ପାରିବ ନାହିଁ । ଯୋଗକୁ ସେଇଆ ଘଟିଲା ।

ଘଡ ଘଡ ଶବ୍ଦ କରି ଭୂଇଁଟା ଦିନେ କମ୍ପି ଉଠିଲା । ଲୋକେ ପ୍ରାଣ ବିକଳରେ ଘରୁ ପଦାକୁ ବାହାରି ଆସିଲେ । ଏତେ ବର୍ଷ ହେବ ଏତେ ଜୋରରେ ସେମାନେ କେବେ ଧାଇଁ ନଥିଲେ । ଚିତ୍କାର କରି ସ୍ତ୍ରୀ-ପୁରୁଷ, ପିଲା ସମସ୍ତେ ଛୁଟିଲେ ପାହାଡ ତଳକୁ ।

"ରହିଯାଅ !" ହଠାତ୍ ଆଦେଶ ହେଲା ଭଳି ଏକ ଶବ୍ଦ ଶୁଣାଗଲା ।

ଧାଉଁଥିବା ଲୋକଙ୍କ ଭିତରୁ କେହି ଏ ଆଦେଶ ଅମାନ୍ୟ କରି ପାରିଲେ ନାହିଁ ।

ଜଣେ ମାତ୍ର ଲୋକ ଦେଖି ସେମାନେ ଅଟକି ଗଲେ । ଧୀରେ ଧୀରେ ସେ ଲୋକଙ୍କ ପାଖକୁ ଯିବାକୁ ଲାଗିଲେ ।

ପାହାଡର ସବା ଉପରେ ଠିଆ ହୋଇଛନ୍ତି ମଣିଷ ଜଣେ । ଆଗରେ ଥିବା ଲୋକଟି ତାଙ୍କୁ ଚିହ୍ନି ପାରି ପାଟି କରି ଉଠିଲା, "ଆରେ, ଏତ ଆମ ରାଜା ।" ଏହା-ପରେ ପୁରୁଣା ରାଜାଙ୍କ କଥା ସମସ୍ତଙ୍କର ମନେ ପଡ଼ିଗଲା ।

ରାଜା ହରି କା ବୁସକିଦ୍ କ୍ରୋଧକୁ ଆଉ ଚାପି ରଖିପାରିଲେ ନାହିଁ । ଗର୍ଜନ କରି ଉଠିଲେ, "ତୁମେ ସବୁ ମୋତେ ଭର୍ତ୍ସିଚ । ମୁଁ ନଥିବା ବେଳେ ଖେତର ଯତ୍ନ ନେବାକୁ ପରା ତୁମକୁ କହି ଯାଇଥିଲି । ତୁମେ ଭାବିଚ, ଏ ରାଜ୍ୟରେ ଏ ଶୁଖିଲା ଭୂଇଁର କିଛି ମୂଲ୍ୟ ଅଛି ?"

ଚାରିଆଡେ ନୀରବତା । ଏମିତିକି ପାହାଡର ଭୀଷଣ କମ୍ପନ ବି ବନ୍ଦ ହୋଇ-ଗଲା ।

ରାଜା ଆଦେଶ ଦେଲେ, "ଏ ବର୍ଷ ତୁମେ ସବୁ ଯେଉଁ ତମାଖୁ ଚାଷ କରିଚ,

ମୋ ପାଖକୁ ଆଣ ।''

ତାଙ୍କ ଆଦେଶ ପାଳନ ପାଇଁ ଅନେକ ଲୋକ ତରବର ହୋଇ ଉଠିଲେ । ଲଜ୍ୟାର କଥା, ରାଜାଙ୍କ ସାମନାରେ ସେମାନେ ଆଣି ରଖିଦେଲେ ଖୁବ୍ ଅଳ୍ପ ଫସଲ ।

ରାଜା ହରି କା ବୁସକିଦ୍ ବହୁ ବେଳ ଯାଏ ତମାଖୁକୁ ଅନେଇ ରହିଲେ । ଶେଷକୁ କହିଲେ, ''ଯେ ପର୍ଯ୍ୟନ୍ତ ପାହାଡ କଡରେ ମୁଁ ଭଲ ତମାଖୁ ଫସଲ ନଦେଖିଚି ତୁମର ଅବାଧ୍ୟପଣ ଆଉ ଅଳସୁଆମିକୁ ମୁଁ କେବେ ବରଦାସ୍ତ କରି ପାରିବି ନାହିଁ ।''

ଏହାପରେ ସେ ସାମନାରେ ପଡିଥିବା ଅଳ୍ପ କେତେକ ତମାଖୁ ଗୋଟାଇ ରଖିଲେ । ପ୍ରଜାମାନଙ୍କ ପାଖରୁ ଯାଇ ନିଜର ହାତମୁଠାକୁ ପାହାଡରେ ପିଟିଦେଲେ । ହାତମୁଠା ଯେଉଁଠି ବାଜିଲା, ସେଠି ଦେଖାଗଲା ଏକ ପ୍ରକାଣ୍ଡ ଗାତ । ରାଜା ସେଇ ଗାତ ଭିତରେ ଲମ୍ଫ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ । ଏହାଦେଖି ପ୍ରଜାମାନେ କାନ୍ଦି ଉଠିଲେ ।

ରାଜା ହରି କା ବୁସକିଦ୍ ଏବେ ବି ପାହାଡ ଭିତରେ ଅପେକ୍ଷା କରି ରହିଛନ୍ତି । ଭଲ ମନରେ ଥିବାବେଳେ କିଛି ଧୂଆଁପତ୍ର ପିଅନ୍ତି । ପାହାଡ ଉପରେ ତାର ଧୂଆଁ ଉଠୁଥିବାର ଦେଖାଯାଏ । ଏହାଦେଖି ଲୋକଙ୍କର ମନ ପଡିଯାଏ, ସେ ଏବେ ବି ସେଠାରେ ରହିଛନ୍ତି ।

ମନ ତାଙ୍କର ଯେତେବେଳେ ଖରାପ ଥାଏ, କ'ଣ ଯେ ଘଟୁଥିବ ସେ କଥା ଭାବିବାକୁ ମୋତେ ଘୃଣା ଲାଗେ । ତୁମକୁ କ'ଣ ସେମିତି ଲାଗେ ନାହିଁ ?



# ବିଧବାର ଗଧ

(ଚିନା ଲୋକକଥା)

ଏକଦା ଚୀନରେ ଜଣେ ଯୁବକ ବଣିକ ଥିଲେ । ସେ ଯେମିତି ସାହାସୀ, ସେମିତି ଚଞ୍ଚଳ । ବହୁ ଦୂର ଦୂରନ୍ତ ଦେଶ ସେ ବୁଲିଛନ୍ତି । ରାତିରେ ରାସ୍ତା କଡ, ପାନ୍ଥଶାଳାରେ ବିଶ୍ରାମ ନିଅନ୍ତି । ହେଲେ ଚୋର ଭୟରେ ସବୁବେଳେ ହାତରେ ତାଙ୍କର ଥାଏ ଛୁରୀଟିଏ ।

ଦିନେ ପାହାଡ ଦେଇ ବହୁ ଦୂର ଯାତ୍ରା କରିବା ପରେ ସେ ହାଲିଆ ହୋଇ ପଡିଲେ । ଗଧଗୁଡାକ ମଧ୍ୟ ବୋଝ ବୋହି ବୋହି ଥକିଗଲେ ।

ବଣିକ ଗଧଗୁଡାକୁ ଛାଡିଦେଇ କଅଁଳେଇ କହିଲେ, ''ବିଚରା ପଶୁଗଣ, ତୁମେ ସବୁ ବୁଢା ହୋଇ ଗଲଣି । ଏବେ ତୁମର ବିଶ୍ରାମ ନେବା ଆଉ ଶାଗୁଆ କ୍ଷେତରେ ଚରିବାର ବେଳ ।''

ସେତିକି ବେଳେ ବୁଢାଟିଏ ଯାଉଥିଲା । ବଣିକଙ୍କ ଡାକରେ ସେ ଅଟକି ଗଲା ।



ବଣିକ ମୁଣ୍ଡ ନୁଆଇଁ ନମସ୍କାର ହୋଇ କହିଲେ, "ଦିନ ସାରା ଚାଲି ଚାଲି ଥକି ଯାଇଛି, ରାତିଟା କାଟିବା ପାଇଁ ଏଠି କେଉଁଠି ପାନ୍ଥଶାଳା ଥିବ ଜାଣ କି ?"

ବୁଢା ଲୋକଟି ରାସ୍ତା ଆଡକୁ ହାତ ଦେଖାଇ କହିଲା, "ସେଇ କଡକୁ ବୁଲି ଗଲେ ତୁମେ ବିଧବା ଚିଆଙ୍ଗର ପାନ୍ଥଶାଳାରେ ପହଞ୍ଚିବ । ସେ ଯେମିତି ଚମତ୍କାର ଖାଦ୍ୟ ପ୍ରସ୍ତୁତ କରେ ନା, ଅନେକ ଦୂର ପର୍ଯ୍ୟନ୍ତ ସେମିତି କେଉଁଠି ମିଳିବ ନାହିଁ ।"

ବଣିକଙ୍କ ବୁଢା ଗଧ ଗୁଡାକ ଦେଖି ସେ କିଛି କ୍ଷଣ ଚୁପ୍ ହୋଇ କହିଲା, "ହଁ, ସେ ଗଧ ବି ବିକେ । ତା' ଖାଦ୍ୟ ଭଳି ଗଧ ଗୁଡିକ ବି ଖୁବ୍ ପ୍ରସିଦ୍ଧ ।"

ଏକାବେଳକେ ବିଶ୍ରାମ ଆଉ ଆରାମ ମିଳିବା କଥା ଶୁଣି ବଣିକ ଭାରି ଖୁସି ହୋଇଗଲେ । ବିନମ୍ରର ସହିତ ସେ ବୁଢାକୁ ଧନ୍ୟବାଦ ଜଣାଇ ଆଗକୁ ଚାଲିଲେ ।

ପାନ୍ଥଶାଳା ପାଖରେ ପହଞ୍ଚି ସେ ଦେଖିଲେ, ସେଇଟି ଭାରି ପରିଷ୍କାର, ପରିଚ୍ଛନ୍ନ । ଚାରି ପାଖରେ ସୁନ୍ଦର ବଗିଚା ।

ଏକ ସୁନ୍ଦରୀ ସ୍ତ୍ରୀ ଲୋକ ଦୁଆର ପାଖରେ ଠିଆ ହୋଇଥିଲା । ତାଙ୍କୁ ଦେଖି ମଧୁର ସ୍ୱରରେ କହିଲା, "ଆସନ୍ତୁ ।"

ଏହାକହି ବଣିକଙ୍କୁ ସେ ଗଧଶାଳା ଦେଖାଇଦେଲା । ବିଧବାକୁ ସାହାଯ୍ୟ କରିବା ପାଇଁ ତାର କେହି ଚାକର ନ ଥାନ୍ତି । ତେଣୁ ସେ ନିଜେ ଗଧଗୁଡିକର ଯତ୍ନ ନେଲେ ।

ଗଧଗୁଡାକ ଆରାମରେ ରହିବା ପରେ ବଣିକ ବୈଠକଖାନାରେ ପଶିଲେ । ଉଜ୍ଜ୍ୱଳ ଆଲୋକରେ ବୈଠକଖାନାଟି ବେଶ୍ ଶୋଭା ପାଉଥିଲା । ଆଗରୁ ଅନେକ ଲୋକ ସେଠି ବସି ଖିଆପିଆ କରୁଥାନ୍ତି । ନିଜନିଜର ଭ୍ରମଣ କାହାଣୀ କୁହାକୁହି ହେଉଥାନ୍ତି ।



ପର୍ଯ୍ୟଟକମାନଙ୍କ ଭିତରୁ ଜଣେ କହୁଥାନ୍ତି, "ଉତ୍ତର ଦକ୍ଷିଣରେ ଏତେ ପାହାଡ ପର୍ବତ ବୁଲିଛି ହେଲେ ଏ ଭଳି ଆରାମଦାୟକ ପାନ୍ଥଶାଳା ମୁଁ ଆଉ କେଉଁଠି ଦେଖିନାହିଁ ।"

"ବିଧବାର ରନ୍ଧଣା ବି ସେମିତି । କେହି ତା'ର ସମକକ୍ଷ ହୋଇପାରିବ ନାହିଁ । ଆଉ ଜଣେ ନିଜ ପେଟକୁ ଆଉଁସି ପ୍ରଶଂସା କରିବାକୁ ଲାଗିଲେ ।

"ଭାରତ ଓ ପର୍ସିଆର ମୁଁ ଯେତେ ଜାଗା ବୁଲିଛି, କେଉଁଠି ଏମିତି ଯତ୍ନ ପାଇନି ।" ବଣିକଙ୍କୁ ଅନ୍ୟଜଣେ କହିଲେ ।

ସତରେ ଖାଦ୍ୟଟା ଥିଲା ଖୁବ୍ ଚମତ୍କାର । ଏମିତି ସୁଆଦିଆ ଜିନିଷ ବଣିକ କେଉଁଠି ଖାଇ ନଥିଲେ ।

ସମସ୍ତେ ବେଶ୍ ଆନନ୍ଦରେ ତିଆଙ୍ଗର ରନ୍ଧା ଗ୍ରହଣ ଭୋଜନ କଲେ । ପେଟପୂରା ଭୋଜନ ପରେ ଆଙ୍ଗୁଠି ଚାଟି ଚାଟି ସମସ୍ତେ ପଶମର କୁସନ ଉପରେ ଆଉଜି ପଡ଼ିଲେ ।

ଏହାପରେ ତିଆଙ୍ଗ ଟେବୁଲ ଉପରେ ଗହମ ପିଠା ଥିବା ଗୋଟିଏ ପ୍ଲେଟ ଥୋଇ ଦେଇଗଲା । ସମସ୍ତେ ଖୁସିରେ ଖାଇ ବସିଲେ । ହେଲେ ଯୁବକ ବଣିକ ଖୁବ୍ କ୍ଳାନ୍ତ ହୋଇ ପଡିଥିବାରୁ ଖାଇଲେ ନାହିଁ । ସାଙ୍ଗମାନଙ୍କ ପାଖରୁ ଯାଇ ଗୋଟିଏ ବଡ ଘରକୁ ଚାଲିଗଲେ । ସେଇ ଘରେ ତାଙ୍କୁ ରାତିଟା କଟାଇବାକୁ ପଡ଼ିବ । ସେ ଘରେ ପଡିଥାଏ ଧାଡି ଧାଡି ହୋଇ ଅନେକ ଗୁଡିଏ ଶେଯ । ଗୋଟିଏ କୋଣରେ ପଡ଼ିଥିବା ଶେଯକୁ ବାଛି ବଣିକ ସେଥିରେ ଗଡି ପଡ଼ିଲେ । ଗ୍ରହୁଁ ଗ୍ରହୁଁ ତାଙ୍କୁ ନିଘୋଡ ନିଦ ଲାଗି ଗଲା ।

ଅଳ୍ପ କେତେଘଣ୍ଟା ଶୋଇଛନ୍ତି କି ନାହିଁ, କ'ଣ ଗୋଟେ ରଗଡ଼ିବା ଶବ୍ଦ ଶୁଣି ତାଙ୍କର ନିଦ ଭାଙ୍ଗି ଗଲା । ହାତରେ ଖଣ୍ଡା ଧରି ସେ ଶେଯ ଉପରୁ ଡେଇଁ ପଡିଲେ । ତାଙ୍କ ଚାରି ପାଖରେ ଅନ୍ୟ ପର୍ଯ୍ୟଟକମାନେ ନିଶ୍ଚିନ୍ତରେ ଶୋଇଥାନ୍ତି । ମୁହୂର୍ତ୍ତକ ପାଇଁ ସେ ପଥର ଭଳି ଠିଆ ହୋଇ ରହିଲେ । ଏତିକିବେଳେ ପୁଣି ସେ ଶୁଣିବାକୁ ପାଇଲେ ଏକ ଅସ୍ପଷ୍ଟ ଆଞ୍ଚୁଡା ଶବ୍ଦ ।



ଭାବିଲେ ପାନ୍ଥଶାଳାରେ ବୋଧେ ଚୋର ପଶିଛି । ଭୀରୁଗୁଡାଙ୍କୁ ମୁଁ ଦେଖି ନେଉଚି, କେମିତି ଜଣେ ନିରୀହା ବିଧବା ଘରୁ ଚୋରି କରିବେ ।

ଆସ୍ତେ ଆସ୍ତେ ଯାଇ ପାଖ ଘରର ଝରକା ଆଡକୁ ସେ ଉଙ୍କି ମାରି ଚାହିଁଲେ । ଯାହା ଦେଖିଲେ ଆଶ୍ଚର୍ଯ୍ୟରେ ତାଙ୍କ ପାଟି ମେଲା ହୋଇଗଲା । ଘରଟିରେ ଗୋଟିଏ ଛବି । ତା' ପୁଣି ଜଣେ ସ୍ତ୍ରୀ ଲୋକର ।

ସ୍ତ୍ରୀ ଲୋକଟି ଶେଯ ତଳୁ ଗୋଟିଏ ପ୍ରକାଣ୍ଡ ଟ୍ରଙ୍କ କାଢ଼ି ନଇଁପଡି ତାକୁ ଦେଖୁଥାଏ । ତାର ବଡ ବଡ କଳା ବାଳଗୁଡାକ ତା' କାନ୍ଧ ଚାରିପାଖରେ ଉଡୁଥାଏ । ସେଗୁଡା ସାପଭଳି ପବନରେ ଗୁଡାଇ ହୋଇ ଯାଉଥାଏ ।

ଅଦ୍ଭୁତ ମହିଳାଟି ଝରକା ଆଡକୁ ଆଗେଇ ଆସୁଥିବା ଦେଖି ବଣିକ ଜାନିଆରେ ପଛକୁ ଘୁଞ୍ଚି ଆସିଲେ । ଅନ୍ଧାରରେ ତାର ଜଳିଲା ଜଳିଲା ଆଖିଦୁଇଟା କ'ଣ ଯେମିତି ଖୋଜୁଥିଲେ । ବଣିକ ଆହୁରି ପଛକୁ ହଟି ଆସିଲେ ।

ଝରକା ପାଖରୁ ଘୁଞ୍ଚି ଯାଉଥିବା ମୁହଁଟିକୁ ଚିହ୍ନିପାରି ସେ ଆଶ୍ଚର୍ଯ୍ୟ ହୋଇ କହି ଉଠିଲେ, "ଆରେ, ଇଏ ତ ସେଇ ବିଧବା ଚିଆଙ୍ଗ । ହେଲେ ମୁହଁରେ ତାର ଏ ଦୁଷ୍ଟ ଚାହାଣୀ କାହିଁକି ? ଲୁଚି ଦେଖେ, କ'ଣ ସେ କରୁଚି ।"

ଚିଆଙ୍ଗ ସିନ୍ଦୁକ ପାଖକୁ ଫେରିଗଲା । ବଣିକ କାବା ହୋଇ ଦେଖିବାକୁ ଲାଗିଲେ, ସିନ୍ଦୁକରୁ ସେ ଗୋଟିଏ ଛୋଟ କାଠ ଘୋଡା, କାଠର ଗୋଟିଏ ମଣିଷ ଆଉ ଛୋଟ ...ଙ୍ଗଳଟିଏ କାଢ଼ିଲା । ତା' ପରେ ନଇଁ ପଡି କ'ଣ ସବୁ କହିବାକୁ ଲାଗିଲା । ବଣିକ ସ୍ପଷ୍ଟ ଭାବରେ କିଛି ଶୁଣି ପାରିଲେ ନାହିଁ ।

ତାର ସ୍ୱର ପ୍ରଚଣ୍ଡ ହେବା ମାତ୍ରେ କାଠ ମୂର୍ତ୍ତି ଗୁଡାକ ଚାଲିବାକୁ ଆରମ୍ଭ କଲେ । ସଙ୍ଗେ ସଙ୍ଗେ ସେଇ ଘରଟିରେ ହଳ ହୋଇଗଲା ।

ହଳ ହୋଇ ସାରିବା ପରେ ବିଧବାଟି ସେଇ କାଠ ମୂର୍ତ୍ତିଗୁଡିକ ପୁଣି ସିନ୍ଦୁକରେ ଭର୍ତ୍ତି କରି ଦେଲା । ମୁଠାଏ ମଞ୍ଜି ଆଣି ମାଟିରେ ବୁଣିବାକୁ ଲାଗିଲା ।

ବଣିକଙ୍କ ବିସ୍ମୟ ଦେଖି ଆମେ କେବେ ଆଶ୍ଚର୍ଯ୍ୟ ହେବାନି । କାରଣ ଆମ ଭିତରୁ କେହି କେବେ ଏଭଳି ଦୃଶ୍ୟ ଦେଖି ନ ଥିବୁ । କୁହୁକ ମଞ୍ଜି ଗୁଡିକ ଭୂଇଁ ଛୁଇଁବା ମାତ୍ରେ ଗହମ ଗଛ ଗଜୁରି ଉଠିଲା । ଚାହୁଁ ଚାହୁଁ ସାରା ଘରଟି ସୁନେଲି ଗଛରେ ଭରିଗଲା ।

କେତେ ସହଜ ସରଳ ଏସବୁ ଘଟଣା ଘଟି ଯାଉଥାଏ । ବିଧବାଟି ଗହମ ଅମଳ କରି ହେମାଦସ୍ତାରେ ତାକୁ କୁଟିବାରେ ବ୍ୟସ୍ତ ରହିଲା ।

ଖୁସି ହୋଇ ସେ କହିବାକୁ ଲାଗିଲା, "ହେଃ ହେଃ, କୁହୁକ ପିଠା କରିବା ପାଇଁ ଏବେ ମୋର ବହୁତ ଅଟା ହୋଇଗଲା ।"

ବଣିକ ଚିନ୍ତିତ ମନରେ ନିଜ ଶେଯ ପାଖକୁ ଆସିଲେ । ଗହମ ପିଠାରେ କି କୁହୁକ ରହିଚି, ଏକଥା ଭାବି ଭାବି ସେ ଶୋଇ ପଡିଲେ । ନିଶ୍ଚିନ୍ତ ହେଲେ, ଯାହାହେଉ ସେ ତାକୁ ଖାଇ ନାହାନ୍ତି ।

ତହିଁଆର ଦିନ ସକାଳେ କାହାର କହୁଣୀ ମାଡରେ ବଣିକ ଶେଯରୁ ତଳେ ପଡିଗଲେ । ଚଟାଣରେ ପଡି ରହିଥିବା ବେଳେ ଜୋରରେ ଗଧ ରଡି ଶୁଣି ତାଙ୍କ କାନ

ଗୁଡା ଡାବ୍‌ଦା ହୋଇ ପଡିଲା । ତେଇଁ ଉଠି ଚାରିଆଡକୁ ଅନେଇଁଲେ । ଦେଖିଲେ ସବୁ ଆକାରର ଗଧରେ ଘରଟି ଭରପୂର ।

"ହେଲେ, ପର୍ଯ୍ୟଟକମାନେ କାହାନ୍ତି ?" ସେ ମନକୁ ମନ ପଚାରିଲେ ।

ହଠାତ୍ ଗତ ରତିର ଘଟଣା ସବୁ ତାଙ୍କର ମନେ ପଡିଗଲା । ସେ ଚିତ୍କାର କରି ଉଠିଲେ, "କି ଧୂର୍ତ୍ତ ବୁଢୀ ! କୁହୁକ ପିଠା ଖୁଆଇ ସମସ୍ତଙ୍କୁ ଗଧ କରି ପକାଇଛି !"

ଆଉ ଅଧିକ କାଳ ନ ଛବି ନିଜର ବିଛଣାପତ୍ର ଧରି ବିଧବାଠାରୁ ମେଲାଣି ନେବାକୁ ସେ ଚାହିଁଲେ ।

ତାକୁ କହିଲେ, "ଜଳଖିଆ ଖାଇବାକୁ ମୋର ବେଳ ନାହିଁ । ହେଲେ ବାଟରେ ଖାଇବା ପାଇ ତୁମର ଚମତ୍କାର ଗହମ ପିଠା କେତେଖଣ୍ଡ ନେଇଯିବାକୁ ଅନୁମତି ଦିଅ ।"

ଅତି ଆଗ୍ରହରେ ଚିଆଙ୍ଗ ବଣିକ ପାଇଁ କେତେଖଣ୍ଡ କୁହୁକ ପିଠା ବାନ୍ଧି ଦେଲା । ବିଧବାର ବଦାନ୍ୟତା ପାଇଁ ଧନ୍ୟବାଦ ଜଣାଇ କହିଗଲେ ଫେରିବା ବାଟରେ ସେ ନିଶ୍ଚୟ ପାନ୍ଥଶାଳାକୁ ଆସିବେ ।



ମୁଁ ଯଦି ବଣିକ ସ୍ଥାନରେ ଥାଆନ୍ତି, ସୌଭାଗ୍ୟକୁ ରକ୍ଷା ପାଇ ଯାଇଥିବାରୁ ଭଗବାନଙ୍କୁ ଧନ୍ୟବାଦ ଦେଇଥାନ୍ତି । ଭବିଷ୍ୟତରେ ପାନ୍ଥଶାଳାକୁ ଆଉ କେବେ ଆସି ନଥାନ୍ତି । ହେଲେ ବଣିକ ମୋଠାରୁ ଅଧିକ ସାହସୀ ପୁଣି ଚତୁର ।

କେତେଦିନ ପରେ ସେ ପାନ୍ଥଶାଳାକୁ ଫେରିଲେ । ବେଶ୍ ଫୁର୍ତ୍ତିରେ ପାନ୍ଥଶାଳା ଦୁଆରେ ଛିଡା ହୋଇ କବାଟ ବାଡେଇବାକୁ ଲାଗିଲେ ।

ବଣିକଙ୍କୁ ଠିଆ ହୋଇଥିବା ଦେଖି ତିଆଙ୍ଗ ତାଟକା ହୋଇଗଲା ।

ବଣିକ ମନେ ମନେ ଭାବୁଥାନ୍ତି, "ହଉ ରହ, ଏଥର ମୋର ପାଳି । ତୋତେ କେମିତି ଆଶ୍ଚର୍ଯ୍ୟ କରିଦେଉଛି ଦେଖ୍ ।"

ବଣିକ ଖୁସି ହୋଇ ବିଧବାକୁ ସ୍ୱାଗତ ଜଣାଇଲେ । କହିଲେ, "ଏଠାକୁ ଫେରି ଆସି ମୁଁ ଖୁବ୍ ଖୁସି । ତୁମର ରନ୍ଧା ଖାଦ୍ୟ ମୋତେ ହରାଇବାକୁ ପଡ଼ିଲା । କାରଣ ମୋ ପାଇଁ ଯେଉଁ ଗହମ ପିଠା ବାନ୍ଧି ଦେଇଥିଲ, ବାଟରେ କେତେକ ପର୍ଯ୍ୟଟକ ତାକୁ ଖାଇ ପକାଇଲେ ।"

ବିଧବାଟି ସହାନୁଭୂତି ଦେଖାଇ କହିଲା, "ତୁମେ ଭୋକିଲା ରହିଲ, ସତରେ ମୁଁ ଭାରି ଦୁଃଖିତ ।" ବଣିକ କାହିଁକି ଗଧ ହୋଇନି, ସବୁ କଥା ଶୁଣିଲା ପରେ ସେ ଆଉ ଆଶ୍ଚର୍ଯ୍ୟ ହେଲା ନାହିଁ ।

"ମୁଁ କେତୋଟି ତଟକା ପିଠା ରଖିଛି ।" ଏହା କହି ମୁରୁକି ମୁରୁକି ହସିବାକୁ ଲାଗିଲା ।

ଚତୁର ବଣିକ କହି ଉଠିଲେ, "ଚମତ୍କାର । ହେଲେ, ମୁଁ ସାଙ୍ଗରେ ଯେଉଁ ପିଠା ଆଣିଛି, ତାକୁ ଆଗେ ଚାଖ । ସେମାନେ କହୁଥିଲେ, ଦେଶର ସବୁଠୁ ଶ୍ରେଷ୍ଠ ରାନ୍ଧୁଣିଆ କୁଆଡେ ଏ ପିଠା ତିଆରି କରିଛି । ତୁମେ ଏହାର ବିଚାରକ ହେବ ।"

"ନିଶ୍ଚୟ"-- ଏହା କହି ବିଧବା ଚାହା ଆଣିବାକୁ ଚାଲିଗଲା । ସେ ଭାବିଲା "ଏ ଧୂର୍ତ୍ତ ଲୋକକୁ ମୋର କୁହୁକ ପିଠା ଖୁଆଇବାକୁ ଏବେ ବି ବେଳ ଅଛି ।"

ବିଧବା ଯିବା ପରେ ବଣିକ ତାଙ୍କ ଥଳିରୁ ତତ୍‌ଷଣେ ଗହମ ପିଠା କାଢିଲେ । ତିଆଙ୍ଗ ତାଙ୍କୁ ଯେମିତିଆ ପିଠା ବାନ୍ଧି ଦେଇଥିଲା, ଅବିକଳ ସେଇ ରକମର । ତା' ଭିତରେ ସେ ଗୋଟିଏ ସାଧାରଣ ପିଠା ରଖି ଦେଲେ ।

ଦୁହେଁ ବସି ଚା ପିଇବାକୁ ଲାଗିଲେ । ବଣିକ ବିଧବାକୁ ପିଠା ଯାଚିଲେ । ସାଧାରଣ ପିଠାଟିକୁ ବାଛି ତିଆଙ୍ଗ ଖାଇବାକୁ ଲାଗିଲା ।

ଆଶ୍ଚର୍ଯ୍ୟ ହୋଇ ସେ କହିଲା, "ବାଃ ବଡ ଚମତ୍କାର ପିଠାତ । ଏମିତିଆ ପିଠା କଲେ ସତରେ ମୋତେ ଭାରି ଗର୍ବ ଲାଗନ୍ତା ।"

ତିଆଙ୍ଗ ଅନ୍ୟ ପିଠାଟି ଖାଇବା ବେଳେ ବଣିକ ମୁରୁକି ମୁରୁକି ହସୁଥାନ୍ତି । ବିଧବା ଦ୍ୱିତୀୟ ପିଠାଟି ଯେତେବେଳେ ଖାଇ ସାରିଲା, ବଣିକ କହିଲେ, "ବେଶ୍, ବେଶ୍ ତିଆଙ୍ଗ, ଏ ପିଠା ତୁମକୁ ପସନ୍ଦ ଲାଗିଛି ଜାଣି ମୁଁ ଖୁବ୍ ଖୁସି ହେଲି । ଏଗୁଡିକ ସତରେ ତୁମ ତିଆରି ପିଠା ।"

ବିଧବା ପଚାରିଲା, "ତା' କେମିତି ହେବ ?" ଭୟରେ ତାର ବୁକ୍ ହଲିଗଲା ।

ବଣିକ ଉତ୍ତର ଦେଲେ, "ଗହମ ପିଠାର ସବୁ ଗୁପ୍ତ କଥା ମୋତେ ଜଣା । ସବୁବେଳେ ତୁମ ଗଧଶାଳାରେ କେମିତି ଯୁବା ଗଧମାନେ ରହୁଛନ୍ତି, ମୁଁ ସବୁ ଜାଣେ ।"

କ୍ରୋଧରେ ଟିଆଙ୍ଗର ତଣ୍ଟି ଶୁଖିଗଲା । ବଣିକ ଆଗକୁ ପାଦ ପକାଇ ପକାଇ କହିଲେ, "ତୁମେ ତୁମର ଉପଯୁକ୍ତ ଖାଦ୍ୟ ଏବେ ଖାଇଲ ।"

ବିଧବା ଟିଆଙ୍ଗ ରାଗ ଆଉ ଆତଙ୍କରେ ଚିତ୍କାର କରି ଉଠିଲା । ହେଲେ ସେତେବେଳକୁ ତାର କାନଗୁଡାକ ବଡ ବଡ ଆଉ ଧୂସର ହୋଇ ସାରିଥିଲା । ଗ୍ୱହୁଁ ଗ୍ୱହୁଁ ତାର ଘଗିଲା ସ୍ୱର କର୍କଶ ଗଧ ରଡି ଭଳି ଶୁଣାଗଲା ।

ବିଧବାଟି ସତକୁ ସତ ଗୋଟିଏ ସୁନ୍ଦର ଗଧରେ ପରିଣତ ହୋଇଗଲା ।



# କାଠ ହାତୀ

(ଶ୍ରୀଲଙ୍କାର ଲୋକକଥା)

ଏକଦା ଚନ୍ଦାପାଜୋଟା ନାମରେ ଜଣେ ଧନୀ ଆଉ ଲୋଭୀ ରଜା ଥିଲେ । ଫୁରସତ୍ ପାଇଲେ ଅଧିକାଂଶ ସମୟ ସେ ନିଜର ଧନସମ୍ପତ୍ତିକୁ ଅନେଇଁ ଅନେଇଁ କଟାଉଥିଲେ । ସିନ୍ଧୁକରେ ଥିବା ଧନ, ନଚେତ୍ ନିଜର ହାତୀମାନଙ୍କର ସଂଖ୍ୟା ଗଣନା କରିବା ଛଡ଼ା ଆଉ କୌଣସି କାର୍ଯ୍ୟରେ ତାଙ୍କର ମନ ଲାଗୁ ନ ଥିଲା । କାରଣ ରଜା ଚନ୍ଦାପାଜୋଟାଙ୍କ ସମୟରେ ହାତୀ ସଂଖ୍ୟାରୁ ଜଣେ ଲୋକର ଧନସମ୍ପତ୍ତି କଳନା କରାଯାଉଥିଲା ।

ଦିନେ ରାଜା ତାଙ୍କର ଜଣେ ମନ୍ତ୍ରୀଙ୍କ ସାଙ୍ଗରେ ଭ୍ରମଣ କରୁଥିବା ବେଳେ କହିଲେ, “ସତରେ ମୁଁ ବଡ ଭାଗ୍ୟବାନ୍ । କାରଣ ପୃଥିବୀରେ ମୁଁ ହେଉଛି ସବୁଠାରୁ ଧନଶାଳୀ ରାଜା । ”

ରଜା ଅତି ଗର୍ବୀ ଆଉ ବଦ୍ ମିଜାଜର ଲୋକ । ତେଣୁ ମନ୍ତ୍ରୀ ସାହସ କରି ଉତ୍ତର ଦେଲେ, “ନା ମଣିମା, ପଡୋଶୀ ରଜ୍ୟର ରଜା ଉଦେନା ଏତେ ଧନୀ ଯେ ତାଙ୍କ ତୁଳନାରେ ସମସ୍ତେ ଦରିଦ୍ର ଭଳି ଦେଖାଯାନ୍ତି ।”

ଏକଥା ଶୁଣି ରାଜା ଭାରି ବିରକ୍ତ ହୋଇ ଉଠିଲେ । କ୍ରୋଧ ଜର୍ଜରିତ ହୋଇ କହିଲେ, "ସେକଥା କେମିତି ହେବ ? ମୁଁ କ'ଣ ସବୁ ରାଜାଙ୍କ ମଧ୍ୟରେ ଶ୍ରେଷ୍ଠ ଯୋଦ୍ଧା ନୁହେଁ ? ନିଶ୍ଚିତଭାବେ ମୋଠାରୁ ଅଧିକ ଧନ ସମ୍ପତ୍ତି କାହାର ନାହିଁ ।"

ମନ୍ତ୍ରୀ ଉତ୍ତର ଦେଲେ, "ମହିମା ଯୁବକ ରାଜା ଉଦେନାଙ୍କୁ ଇନ୍ଦ୍ରଜାଲ ବିଦ୍ୟା ଜଣା । ସେଇ ବିଦ୍ୟା ବଳରେ ସେ ପୃଥିବୀର ଯେକୌଣସି ହାତୀକୁ ଆୟତ୍ତ କରିପାରନ୍ତି । ତାଙ୍କର କୁହୁକ ବଂଶୀର ସ୍ୱର ଶୁଣି କୌଣସି ହାତୀ ପଳାଇ ଯାଇ ପାରନ୍ତି ନାହିଁ ।"

ତାଙ୍କ ଅପେକ୍ଷା ଆଉ କାହାର ଅଧିକ ହାତୀ ଥିବା କଥା ରାଜା ଚହାପାଜୋଟାଙ୍କୁ ଅସହ୍ୟ ବୋଧ ହେଲା । କୁହୁକ ବିଦ୍ୟା ସେ କେମିତି ଶିଖି ପାରିବେ, ସେଥିପାଇଁ ସାଙ୍ଗେ ସାଙ୍ଗେ ଗୋଟିଏ ଉପାୟ ପାଞ୍ଚିଲେ ।

ଅନେକ ଦିନ ପରେ ସେ ରାଜ୍ୟର ସବୁ ଜ୍ଞାନୀ ଲୋକଙ୍କୁ ଡକାଇ ଆଦେଶ ଦେଲେ, "କାଠରେ ଏମିତି ଗୋଟିଏ ଫମ୍ପା ହାତୀ ତିଆରି କରିବ, ଯିଏକି ଯେକୌଣସି ଜୀବନ୍ତ ହାତୀ କି ଘୋଡା ଅପେକ୍ଷା ଅଧିକ ଦ୍ରୁତ ଗତିରେ ଯାଇ ପାରିବ ।"

କୁହୁକ ହାତୀ ତିଆରି ହେଲା ପରେ ରାଜା ତାକୁ ଦେଖି କହିଲେ, "ସବୁ ଠିକ୍ ଅଛି । ମୋର ଦୁର୍ଦ୍ଧର୍ଷ ସୈନ୍ୟମାନଙ୍କ ମଧ୍ୟରୁ ଷାଠିଏ ଜଣ ଏହି ହାତୀ ପେଟ ଭିତରେ ରହିବେ ।"

କାଠ ହାତୀ ଭିତରେ ଷାଠିଏ ଜଣ ସୈନ୍ୟ ପଶିଲେ । ତାକୁ ରାଜା ଉଦେନାଙ୍କ ରାଜ୍ୟର ସୀମା ପାଖକୁ ପଠାଗଲା ।

ଅଳ୍ପ ସମୟ ପରେ, ରାଜା ଉଦେନାଙ୍କ ରାଜ୍ୟର ଜଣେ ଲୋକ ଏହି ଅଦ୍ଭୁତ ପ୍ରାଣୀଟିକୁ ଦେଖିଲା । ଏକଥା ଜଣାଇବାକୁ ସେ ରାଜାଙ୍କ ନଅରକୁ ଧାଇଁଗଲା ।

ରାଜା ଉଦେନାଙ୍କର କୌତୁହଳ ହେଲା । କୁହୁକ ବୀଣା ଧରି ସେ ସାଙ୍ଗେ ସାଙ୍ଗେ ହାତୀକୁ ବାନ୍ଧିବାକୁ ବାହାରି ପଡିଲେ ।

ଯାହାହେଉ, ପ୍ରାଣୀଟି ଉପରେ ତାଙ୍କର ଦୃଷ୍ଟି ପଡିବା ମାତ୍ରେ ସେଇଟି ରାଜା ଚହାପାଜୋଟାଙ୍କ ରାଜ୍ୟ ଆଡକୁ ମୁହାଇଁ ଦୌଡିବାକୁ ଲାଗିଲା ।

ରାଜା ଉଦେନା କୁହୁକ ମନ୍ତ୍ର ପାଠ କଲେ । କୁହୁକ ବୀଣା ବଜାଇଲେ । ହେଲେ ସବୁ ବୃଥା ହେଲା । କାଠ ହାତୀର ଦ୍ରୁତ ଗତିକୁ କେହି ରୋକି ପାରିଲେ ନାହିଁ ।

ରାଜା ଭାବିଲେ, ଏତ ବଡ ଅଦ୍ଭୁତ ହାତୀ । ମୋ କୁହୁକ ବଂଶୀର ସ୍ୱରରେ ମଧ୍ୟ ଅଟକିଲା ନାହିଁ । ତାକୁ କୌଣସିମତେ ମୋଠାରୁ ଖସି ପଳାଇ ଯିବାକୁ ଦେବିନାହିଁ ।

ସେ ଘୋଡା ଝପଟାଇ ହାତୀ ପିଛା ଧରିଲେ । ମାଇଲ ମାଇଲ ଧରି ହାତୀ ପଛରେ ଦୌଡିଲେ । ହେଲେ ତାଙ୍କ ଘୋଡାଟି ସେତେ ଜୋରରେ ଦୌଡିପାରୁ ନଥିଲା । ରାଜା ସହଜରେ ଛାଡିବା ଲୋକ ନୁହନ୍ତି । ସେ ହାତୀ ପଛେ ପଛେ ଧାଇଁ ଚାଲିଲେ । ଶେଷକୁ ନିଜ ଇଚ୍ଛାରେ ହାତୀଟି ଅଟକିଲା ।

ରାଜା ଉଦେନା ନିଜ ଘୋଡାକୁ ଠିଆ କରୁ କରୁ ଚହାପାଜୋଟାଙ୍କ ସୈନ୍ୟ-ମାନେ ହାତୀ ଭିତରୁ କୁଦି ବାହାରି ଆସିଲେ ।

ଆମେତ ଜାଣୁ, ସେଇଟା ପ୍ରକୃତ ହାତୀ ନୁହେଁ । ହେଲେ ଗୋଟାଏ ହାତୀ ପେଟରୁ ସୈନ୍ୟମାନେ ଲମ୍ଫ ଦେଇ ବାହାରି ଆସୁଥିବା ଦେଖି ରାଜା ଉଦେନା କେତେ



ବିସ୍ମିତ ହୋଇଥିବେ, କଳ୍ପନା କରି ପାରିବ ।

ସଜ୍ଜିତ ହେବା ପୂର୍ବରୁ ସୈନ୍ୟମାନେ ତାଙ୍କୁ ବନ୍ଦୀକରି ସେମାନଙ୍କ ରାଜାଙ୍କ ପାଖକୁ ଘେନି ଗଲେ । ରାଜା ଉଦେନା ଯେତେବେଳେ ଜାଣି ପାରିଲେ, ତାଙ୍କୁ ପ୍ରତାରିତ କରାଯାଇଛି, ଅତ୍ୟନ୍ତ କ୍ରୁଦ୍ଧ ହୋଇ ଉଠିଲେ ।

ସୈନ୍ୟମାନଙ୍କୁ ସେ ପଚାରିଲେ, "ମୋତେ ଏଭଳି ନୀଚ ଉପାୟରେ କାହିଁକି ବନ୍ଦୀ କରିଛ ?"



ନିଜର କୌଶଳ ସଫଳ ହୋଇଥିବାରୁ ରାଜା ଚଣ୍ଡାପାଜୋଟା ଆନନ୍ଦିତ ହେଲେ ।

ସୌମ୍ୟ ଯୁବକ ରାଜା ଉଦେନାଙ୍କୁ ଦେଖି ରାଜା ଚଣ୍ଡାପାଜୋଟା ମୁହଁରେ ହସ ଫୁଟାଇ ପ୍ରଶ୍ନ କଲେ, ''ତୁମେ କୁହୁକ ବିଦ୍ୟା ଜାଣିଚ ପରା ? ସେ ବିଦ୍ୟାଟି ମୋତେ ଯଦି ଶିଖାଇ ଦେବ, ନିର୍ବିଘ୍ନରେ ତୁମ ରାଜ୍ୟକୁ ଫେରିଯାଇ ପାରିବ ।''



ଏ ପ୍ରଶ୍ନର ଜବାବ ଦେବା ପୂର୍ବରୁ ରାଜା ଉଦେନା କିଛି କ୍ଷଣ ଚିନ୍ତା କରି କହିଲେ—"ମୁଁ ତୁମକୁ ସେ ବିଦ୍ୟା ଶିଖାଇ ଦେବି । କିନ୍ତୁ ତୁମର ସବୁଠୁ ଶ୍ରେଷ୍ଠ ଗୁରୁଙ୍କୁ ଯେଉଁଭଳି ସମ୍ମାନ ଦିଅନ୍ତ, ମୋତେ ସେହିପରି ସମ୍ମାନ ଦେବାକୁ ପଡ଼ିବ ।"

ବିସ୍ମୟରେ ରାଜା ଚଣ୍ଡାପାଜୋଟାଙ୍କ ପାଟି ମେଲା ହୋଇଗଲା । ରାଜା ଖାବରେ ସାରା ଜୀବନ କାଳ ଭିତରେ ସେ ସମସ୍ତଙ୍କୁ ନିଜଠାରୁ ନ୍ୟୁନ ବୋଲି ମନେ କରି ଆସିଛନ୍ତି । ଛାତୀ ଶୂନ୍ୟରେ ଉଡ଼ିବା ପରି କାହାରିକୁ ସମ୍ମାନ ଦେବା ତାଙ୍କର ପ୍ରକୃତି ବିରୁଦ୍ଧ ଥିଲା ।

ରାଜା ଉଦେନାଙ୍କୁ ସେ ପଚାରିଲେ, "ଯିଏ ତୁମକୁ ସମ୍ମାନ ଦେଖାଇବ ତୁମେ ତାକୁ ସେ ବିଦ୍ୟା ଶିଖାଇ ପାରିବ କି ?

ଯୁବକ ରାଜା ଉତ୍ତର ଦେଲେ, 'ହଁ ।'

ଏକଥା ଶୁଣି ରାଜା ଚଣ୍ଡାପାଜୋଟାଙ୍କୁ ଗୋଟିଏ ବୁଦ୍ଧି ଦିଶିଲା । ବାସୁଲାଦତ୍ତା ନାମରେ ତାଙ୍କର ଜଣେ ସୁନ୍ଦରୀ କନ୍ୟା ଥିଲା । ରାଜା ଉଦେନାଙ୍କ ଠାରୁ ସେ ତ କୁହୁକ ବିଦ୍ୟା ଶିଖି ପାରନ୍ତା । ହେଲେ ସେ ଭୟ କରୁଥିଲେ କାଳେ ଝିଅ ସେଇ ସୁନ୍ଦର ରାଜାଙ୍କ ପ୍ରେମରେ ପଡ଼ିଯିବ । ନିଜ ଦାଢ଼ୀକୁ ଟାଣି ଟାଣି କିଛି କ୍ଷଣ ସେ ଗଭୀର ଚିନ୍ତା କଲେ । ଶେଷରେ ଗୋଟିଏ ଉପାୟ ଠିକ୍ କଲେ ।

ରାଜା ଉଦେନାଙ୍କୁ ସେ କହିଲେ, "ମୋର ଗୋଟିଏ କୁଜୀ ଝିଅ ଅଛି । ସେ ତୁମକୁ ଯଥେଷ୍ଟ ସମ୍ମାନ ଦେବ । ତା' ବଦଳରେ ତୁମେ ତାକୁ କୁହୁକ ବିଦ୍ୟା ଶିଖାଇ ଦେବ ।"

ରାଜା ଉଦେନା ଏ ପ୍ରସ୍ତାବରେ ରାଜି ହେଲେ ।

ରାଜା ଚଣ୍ଡାପାଜୋଟା କହିଲେ, "ଝିଅଟିର ପିଠିରେ କୁଜ ଥିବାରୁ ସେ ଲଜ୍ଜାବୋଧ କରୁଛି । ତେଣୁ ତୁମେ ଶିକ୍ଷା ଦେବାବେଳେ, ସେ ପରଦା ଉହାଡ଼ରେ ଲୁଚି ରହିବ ।"

ରାଜା ଉଦେନା ଏସବୁ ସର୍ତ୍ତ ମାନିନେବା ପରେ ରାଜା ଝିଅ ପାଖକୁ ଗଲେ । ତାକୁ କ'ଣ କରିବାକୁ ହେବ, ସେକଥା ଜଣାଇ ଦେଲେ । କହିଲେ, "ଦେଖ୍ ଝିଅ ତୋତେ ଯିଏ ଶିକ୍ଷାଦେବେ, ତାଙ୍କୁ କୁଷ୍ଠ ରୋଗ ଧରିଛି । ତେଣୁ ପାଠ ଶିଖିବା ବେଳେ ତୁ ପରଦା ପଛରେ ରହିବୁ । ଯେମିତିକି ତୋ ଦୃଷ୍ଟି ତାଙ୍କ ଉପରେ ନ ପଡ଼େ ।"

ଠିକ୍ ତା ପର ଦିନଠୁ ରାଜା ଉଦେନା ବାସୁଲାଦତ୍ତାକୁ କୁହୁକ ବିଦ୍ୟା ଶିକ୍ଷା ଦେବା ଆରମ୍ଭ କଲେ । ପ୍ରଥମ ଦୁଇଦିନ ବାସୁଲାଦତ୍ତା ମନଯୋଗ ଦେଇ ସବୁ ଶୁଣିଲା । ରାଜା ଉଦେନା ଯାହା କହିଲେ, ତାହାକୁ ସେ ପୁନରାବୃତ୍ତି କଲା । ତୃତୀୟ ଦିନ ତାର ମନ ଅସ୍ଥିର ହେବାକୁ ଆରମ୍ଭ କଲା । ପୂର୍ବ ଦିନ ମାନଙ୍କରେ ସେ ଯାହା ଶିଖିଥିଲା, ସେକଥା ମନେ ରଖିପାରିଲା ନାହିଁ । ବରାବର ଭୁଲ କରିବାକୁ ଲାଗିଲା । ଶେଷକୁ ରାଜା ଉଦେନା ଆଉ ସହି ପାରିଲେ ନାହିଁ । ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା । କ୍ରୋଧ ସମ୍ଭାଳି ନ ପାରି ସେ ଚିତ୍କାର କରି କହିଲେ, "ତୋ' ଭଳି ଗୋଟାଏ ବୋକୀ କୁଜ୍ୟା ଜୀବ ଶହେ ବର୍ଷ ଚେଷ୍ଟା କଲେ ବି ଏ କୁହୁକ ବିଦ୍ୟା ଶିଖି ପାରିବ ନାହିଁ ।"



'କୁଜି' ଶବ୍ଦ ସମ୍ବୋଧନରେ ବାସୁଳାଦଈ ହତବତେଇଗଲା । ସେ ବି ଓଲଟ ଜବାବ ଦେଇ କହିଲା, "ତୁ କୁତ୍ସିତ କଦାକାର କୁଷ୍ଠରୋଗୀଟା । ମୋତେ ଅପମାନ ଦେବାକୁ କେମିତି ସାହସ କରୁଚ୍ ?"

ତାଙ୍କୁ ଯେପରି ଶବ୍ଦରେ ସମ୍ବୋଧନ କରାଗଲା, ସେଥିରେ ରାଜା ଉଦେନା ମଧ୍ୟ ବିଚଳିତ ହୋଇ ପଡିଲେ । ମଝିରେ ଟଣା ଯାଇଥିବା ପରଦାକୁ ଛିଣ୍ଡାଇ ପକାଇ ମୁହାଁ-ମୁହିଁ କଳି ପାଇଁ ସେ ପ୍ରସ୍ତୁତ ହୋଇଗଲେ ।

ଦୁହେଁ ପରସ୍ପରକୁ ଦେଖି ବିସ୍ମୟରେ ଅଭିଭୂତ ହୋଇ ପଡିଲେ । ରାଜା ଚନ୍ଦାପାଜୋଟାଙ୍କ କଥା ଅନୁସାରେ କେହି ତ ବିକୃତ, ବିକଳାଙ୍ଗ ନୁହନ୍ତି !! ସତରେ ରାଜା ଉଦେନା ଯେତେ ସୁନ୍ଦରୀ ଯୁବତୀ ଦେଖିଛନ୍ତି, ବାସୁଳାଦଈ ସବୁଠୁ ଅଧିକ ସୁନ୍ଦରୀ । ସେ ସଙ୍ଗେ ସଙ୍ଗେ ତା' ପ୍ରେମରେ ପଡିଗଲେ । ବାସୁଳାଦଈ ପକ୍ଷରେ ମଧ୍ୟ ସେହିପରି ଘଟିଲା । କାରଣ ରାଜା ଉଦେନା ଥିଲେ ପ୍ରକୃତରେ ଅତ୍ୟନ୍ତ ସୁଶ୍ରୀ ଯୁବକ ।

କପଟୀ ରାଜା ଚନ୍ଦାପାଜୋଟାଙ୍କ କାର୍ଯ୍ୟମାନ ସେମାନେ ଜାଣିପାରିଲେ । ରାଜା ଉଦେନାଙ୍କ ମୁକ୍ତି ପାଇଁ ସବୁ ପ୍ରକାରେ ସାହାଯ୍ୟ କରିବାକୁ ବାସୁଳାଦଈ ପ୍ରତିଶ୍ରୁତି ଦେଲା ।

ବାପା ଯେତେବେଳେ ପଚାରନ୍ତି, କୁହୁକ ବିଦ୍ୟା ଶିଖି ସାରିଲୁଣି ? ବାସୁଳାଦଈ ସବୁଥର କହୁଥିଲା ଆଉ କେଇଟା ଦିନରେ ସେ ବିଦ୍ୟା ପୁରାପୁରି ହାସଲ କରିନେବ । ଦିନେ ସେ ବାପାଙ୍କୁ କହିଲା, "ବାପା, ମୁଁ ଏବେ କୁହୁକ ବିଦ୍ୟା ଶିଖି ଗଲିଣି । କିନ୍ତୁ ଏହାର ଚମତ୍କାର ଫଳ ପାଇବାକୁ ହେଲେ ମୋତେ ଗୋଟିଏ ଜାତିର ଉଦ୍ଭିଦ ଖୋଜିବାକୁ ପଡ଼ିବ । ସେ ଉଦ୍ଭିଦ ଆମ ରାଜ୍ୟର ସୁଦୂର ସୀମାନ୍ତରେ ମିଳେ । ପ୍ରକୃତରେ ତାହା କେବଳ ରାଜା ଉଦେନାଙ୍କ ରାଜ୍ୟର ସୀମାରେ ରହିଛି ।"

ରାଜା ଚହାପାଜୋଟା ସେ କୁହୁକ ବିଦ୍ୟା ପ୍ରୟୋଗ ପାଇଁ ଏତେ ବ୍ୟାକୁଳ ଥିଲେ ଯେ ରାଜ୍ୟ ସୀମାନ୍ତରକ୍ଷୀମାନଙ୍କୁ ସେ ସଙ୍ଗେ ସଙ୍ଗେ ଆଦେଶ ଦେଲେ, ରାଜଜେମା ଯେତେବେଳେ ପହଞ୍ଚିବ, ତାକୁ ରାଜ୍ୟର ସବୁ ଘାଟି ଦ୍ୱାର ଖୋଲି ଦେବ ।

ରାଜା ଉଦେନା ଓ ବାସୁଳାଦଈ ଧୈର୍ଯ୍ୟ ଧରି ଅପେକ୍ଷା କରି ରହିଲେ । ଦିନକର ରାଜା ଚହାପାଜୋଟା ଶିକାରକୁ ଗଲେ । ସେଇ ସୁଯୋଗରେ ସେମାନେ ତର ତର ହୋଇ ଗୋଟିଏ ଥଳିରେ ସୁନା ମୋହରଗୁଡ଼ିକ ଭର୍ତ୍ତି କଲେ । ଗୋଟାଏ ମଜବୁତିଆ ଘୋଡ଼ା ଉପରେ ବସି ନଅର ଫାଟକ ବାଟେ ବାହାରି ପଳାଇଲେ ।

ସେମାନେ ରାଜ୍ୟ ସୀମାରେ ପହଞ୍ଚିଛନ୍ତି କି ନାହିଁ, ରାଜା ଚହାପାଜୋଟାଙ୍କ ସୈନ୍ୟମାନେ ତାଙ୍କ ପଛକୁ ଲାଗି ଆସିଲେ । ରାଜା ଉଦେନା ଥଳି ଖୋଲି ସୁନା ମୋହର ଗୁଡ଼ିକ ଚାରିଆଡ଼େ ବିଞ୍ଚି ଦେଲେ । ସେ ଯାହା ଆଶା କରିଥିଲେ ସେଇଆ ଘଟିଲା । ଚହାପାଜୋଟାଙ୍କ ସୈନ୍ୟମାନେ ତାଙ୍କ ରାଜାଙ୍କ ଭଳି ଲୋଭୀ ଥିଲେ । ସେମାନଙ୍କ ପିଛା ନ କରି ସୈନ୍ୟମାନେ ସୁନାମୋହର ଗୋଟାଇବାରେ ଲାଗିଲେ ।



ଏଇ ସୁଯୋଗରେ ରାଜା ଉଦେନା ଓ ବାସୁଳାଦତ୍ତା ଦୁହେଁ ବାଟ କାଟି ନିରାପଦରେ ଖସି ପଳାଇଲେ ।

ସବୁ ଘଟଣା ଜାଣିପାରି ରାଜା ଚନ୍ଦାପାଜୋଟା ରାଗରେ ଜର୍ଜର ହୋଇ ଉଠିଲେ । କ୍ରୋଧ ଓ ହତାଶରେ ସେ ଭୂଇଁରେ ପାଦ କଚାଡ଼ିବାକୁ ଲାଗିଲେ । ହେଲେ ରାଜା ଉଦେନାଙ୍କର କିଛି ଅନିଷ୍ଟ କରିପାରିଲେ ନାହିଁ ।

ମୁଁ ତାଙ୍କ ସ୍ଥାନରେ ଥିଲେ, ମୋର ଧନ ସମ୍ପତ୍ତି ନେଇ ବେଶ୍ ସୁଖରେ ଥାନ୍ତି । ଅଧିକ ପାଇବାର ଲାଳସା ରଖି ନ ଥାନ୍ତି ।



## ଅଦୃଶ୍ୟ ନଡା-କୋଟ୍

(ଜାପାନୀ ପରୀ କାହାଣୀ)

ବହୁ ବର୍ଷ ତଳେ ସୁଦୂର ପୂର୍ବ ଦେଶରେ ଗୋଟିଏ ବିଚିତ୍ର ଗ୍ରାମ ଥିଲା । ସେ ଗ୍ରାମର ଅଧିବାସୀମାନେ ଦେଖିବାକୁ ଅଜବ ଢଙ୍ଗର । କାହାରି ଦେହର ଗଠନ ବା ମୁଣ୍ଡର ଆକୃତି ସାଧାରଣ ପୁରୁଷ କି ସ୍ତ୍ରୀ ଲୋକ ଭଳି ନ ଥିଲା । କେତେକଙ୍କର ମୁଣ୍ଡ-ଲମ୍ବା ଓ ବଙ୍କା ତ ଆଉ କେତେକଙ୍କର ଖୁବ୍ ବଡ ଓ ଗୋଲାକାର । ପୁଣି ଆଉ କେତେକଙ୍କର ଚେହେରା ଏମିତି ବିଚିତ୍ର ଯେ ଦେଖିଲେ ମନେ ହେଉଥିଲା, ସତେ ଯେପରି ମୁଣ୍ଡ ପରିବର୍ତ୍ତେ ସେମାନଙ୍କ କାନ୍ଧରେ ଫଳିଚି ଗୋଲ ଆଳୁଟିଏ । ତା ଛଡା ମୋଟା ବୁଦ୍ଧିଆ ବୋଲି ସେମାନଙ୍କର ବେଶ୍ ଖ୍ୟାତି ଥିଲା ।

ସେମାନଙ୍କ ଭିତରେ ଥିଲା ଜଣେ ଅଳସୁଆ ଯୁବକ । ଆମେ ତାକୁ ଓଟୋକୋ ନାମରେ ଡାକିବା । ସବୁବେଳେ ଦୁଷ୍ଟାମୀ କରିବାକୁ ତିଆର । ସାଇ ପଡିଶାର ଲୋକ ମାନଙ୍କୁ ଚିଡେଇବାକୁ ସେ ଭାରି ଭଲ ପାଉଥିଲା । ସେମାନେ ବି ତା' ପ୍ରତି ସେହିପରି ବ୍ୟବହାର ଦେଖାଉଥିଲେ । କିନ୍ତୁ ଏହି ଦୁଷ୍ଟାମୀ ଲାଗି ଦିନେ ଓଟୋକୋ ବଡ ବିପଦରେ ପଡିଲା ।





ଟେଙ୍ଗ୍ ହେଉଛି ଗୋଟିଏ ଅଦ୍ଭୁତ ଜୀବ । ତାର ଅର୍ଥ 'ଲମ୍ବା ନାକ ଅନିଷ୍ଟପ୍ରିୟ ଭୂତ' । ପ୍ରକୃତରେ ତାର ନାକଟି ଖୁବ୍ ଲମ୍ବା । ତାର ପିଠି ପଟେ ଥାଏ, ପର ଥିବା ହଳେ ଡେଣା । ସେ ବିଚିତ୍ର ରକମର ପୋଷାକପତ୍ର ପିନ୍ଧି ଥାଏ । ତା ପାଖରେ କୁହୁକ ଶକ୍ତି ବି ଥାଏ । ଅତି ଦୁଷ୍ଟ ପ୍ରକୃତିର ଲୋକ ନ ହେଲେ ଟେଙ୍ଗ୍ ସାଙ୍ଗରେ କେହି ଖୁଲକୀ ଖେଳିବାକୁ ସାହାସ କରିବ ନାହିଁ । ଓଟୋକୋ ଥିଲା ସେହି-ଭଳି ଜଣେ ଲୋକ ।



ଦିନେ ବାଉଁଶରେ ସେ ଗୋଟିଏ ନଳ ତିଆରି କଲା । ତାକୁ ନେଇ କ'ଣ କରି ପାରିବ, ଏଇ କଥା ଚିନ୍ତା କରିବାକୁ ଲାଗିଲା । ତା' ଭିତରେ ଛୋଟ ଛୋଟ ଗୋଡି ପୂରାଇ ଫୁଙ୍କି ଉଡେଇ ଦେବାକୁ ପ୍ରଥମେ ଭାବିଲା । ତା' ପରେ ଭାବିଲା, ତାକୁ ଦୂରବୀକ୍ଷଣ ଯନ୍ତ୍ର ରୂପେ ବ୍ୟବହାର କରିବ ।

ଗୋଟାଏ ଆଖି ଉପରକୁ ତାକୁ ଟେକି ଛିଦ୍ର ସାହାଯ୍ୟରେ ସେ ଦେଖିଲା ଗୋଟିଏ ଟେଙ୍ଗୁ ଭୂତ ତା' ଆଡକୁ ଉଡି ଆସୁଚି ।

ଓଟୋକୋ ମନକୁ ମନ କହିଲା, "କି ମଜାରେ ! ଦେଖେତ କଳ କୌଶଳରେ ଟେଙ୍ଗୁକୁ ଭୁଲେଇ ତା'ଠୁ ସୁନ୍ଦର ନଡ଼ା କୋଟଟି ନେଇ ପାରୁଚି କି ନାହିଁ ?"

ଖୁବ୍ ଆଗ୍ରହ ଦେଖାଇଲା ଭଳି ଓଟୋକୋ ସେ ନଳ ବାଟେ ଅନେଇଁବାକୁ ଲାଗିଲା । ମଝିରେ ମଝିରେ 'ଓଃ', 'ଆଃ' କହି ଚିତ୍କାର କରୁଥାଏ । ସବୁ ଟେଙ୍ଗୁଙ୍କ ପରି ଏହି ଛୋଟ ଭୂତଟି ମଧ୍ୟ ଖୁବ୍ କୌତୁହଳୀ ଥିଲା । ଓଟୋକୋ କ'ଣ କରୁଚି ଦେଖିବା ପାଇଁ ସେ ତା ପାଖକୁ ଖସି ଖସି ଆସିଲା । ଚେଁ ଚେଁ ସ୍ୱରରେ ସେ ନଳ ଭିତରେ ଟିକିଏ ଚାହିଁବାକୁ ମିନତି କଲା ।

ଓଟୋକୋ ଗର୍ଜନ ଛାଡି କହିଲା, "କ'ଣ କହିଲୁ ? ଯେଉଁ ଦୂରବୀକ୍ଷଣ ଯନ୍ତ୍ରଟି ଖାସ୍ ମୋ ପାଇଁ ତିଆରି ହୋଇଚି, ତା' ଭିତରେ ତୋତେ ଚାହିବାକୁ ଦେବି ।"

ତା' ପରେ ସେ ପୁଣି ନଳ ଭିତରେ ନିରେଖି ଚାହିଁବାକୁ ଲାଗିଲା । ଗୁଣୁ ଗୁଣୁ ହୋଇ କହୁଥାଏ, "ଆଃ ଚନ୍ଦ୍ରଟା ଦେଖିବାକୁ କି ଚମତ୍କାର ! ଟେଙ୍ଗୁଜୀ, ତୋର କ'ଣ ଦେଖିବାକୁ ଇଚ୍ଛା ହେଉନି ? ଚନ୍ଦ୍ରମଣ୍ଡଳର ପ୍ରତ୍ୟେକ ସମତଳ ଭୂମି ଓ ଉପତ୍ୟକା ମୁଁ ଏଠି ଦେଖି ପାରୁଚି ।"

ଦେଖିବା ଆଶାରେ ଟେଙ୍ଗୁ ବିଚରା ବ୍ୟତିବ୍ୟସ୍ତ ହୋଇ ପଡିଲା ।

କାକୁତି ମିନତି ହୋଇ ସେ କହିଲା, "ଦୟାକରି ମୋତେ ଟିକିଏ ଦେଖିବାକୁ ଦେ । ଥରୁଟିଏ ଚାହିଁବା ଲାଗି ତୁ ମୋର ସୁନ୍ଦର ବୁଟ୍ ଯୋଡା ନହେଲେ ଏ ଚକଚକିଆ କଳା ଟୋପି ନେଇ ପାରୁ ।"

କଡ଼ା ସ୍ୱରରେ ଓଟୋକୋ ଉତ୍ତର ଦେଲା, "ନାଃ । ହେଲେ ମୋତେ ଯେବେ ତୋ କୋଟଟା ଦେବୁ, ତେବେ ତୋ' କଥା କେଜାଣି ବିଚାର କରିବି ।"

ଓଟୋକୋ ଆଉ କିଛି ଭାବିବା ପୂର୍ବରୁ ସେ ନିର୍ବୋଧ ଭୂତଟା ଓଟୋକୋ ହାତରେ ତା କୋଟଟା ଗୁଞ୍ଜିଦେଇ ବାଉଁଶ ନଳଟାକୁ ଛିଡ଼ି ନେଲା ।

ଯେତେ ଶୀଘ୍ର ପାରେ ଓଟୋକୋ ସେଠୁ ଦଉଡ଼ି ପଳାଇଲା । ଟେଙ୍ଗୁ ଏକୁଟିଆ ବସି ଭାବି ହେଉଥାଏ, ଦୃଷ୍ଟି ଶକ୍ତି କମିଗଲା ନା ବୁଦ୍ଧି ଦୁର୍ବଳ ହୋଇଗଲା ॥ ସେତ ଦୂରବୀକ୍ଷଣ ଯନ୍ତ୍ର ଭିତରେ ନୀଳ ଆକାଶର ଟେନାଏ ଗୋଲାକାର ଅଂଶ ଛଡ଼ା ଆଉ କିଛି ଦେଖିପାରୁ ନାହିଁ ॥

ଟେଙ୍ଗୁର ଆଖି ଆଗରୁ ଦୂରେଇ ଗଲା ପରେ ଓଟୋକୋ କୋଟଟା ପିନ୍ଧିଲା । କ'ଣ ଘଟିଥିବ ବୋଲି ତୁମେ ଭାବୁଚ ? ଯାଃ । ଏଥର ତାକୁ ଆଉ କେହି ଦେଖି ପାରିଲେ ନାହିଁ । ମନେ ମନେ ଖୁସି ହୋଇ ସେ ତେଇଁ ତେଇଁ ରାସ୍ତା ତଳକୁ ଖସି ଗାଁରେ ପହଞ୍ଚିଲା ।

"ଏଥରକ କି ମଜା ହେବ । ସେ ଭାବିଲା । ଓଃ କି ମଜା । କି ମଜା ॥"

ଲୋକମାନଙ୍କୁ ଧକ୍କା ଦେଇ, ସେମାନଙ୍କର ନାକ ମୋଡ଼ି, ସେମାନଙ୍କୁ ଡରେଇ ଆବାକାବା କରି କେତେ ଫୂର୍ତ୍ତିରେ ତାର ସମୟ କଟିଯାଉଥାଏ ।

ଦୁର୍ଭାଗ୍ୟକୁ ସେତିକିବେଳେ ଜଣେ ଗର୍ବୀ ଜମିଦାର ସେଇ ବାଟେ ଯାଉଥିଲେ । କାଣି ଆଙ୍ଗୁଠିରେ ସେ ଲଗାଇଥିଲେ ଗୋଟିଏ ବଡ ସୁନାମୁଦି । ସେଇ ମୁଦିଟି ଦେଖାଇ ଫୁଲାଇ ହୋଇ ସେ ରାସ୍ତାରେ ଯାଉଥିଲେ । ଠିକ୍ ରାସ୍ତା ମଝିରେ ହୋଇ-ଛନ୍ତି କି ନାହିଁ, ତାଙ୍କ ବାଁ କାନକୁ କିଏ ଯେମିତି ରଗଡ଼ି ଦେବାର ସେ ଅନୁଭବ କଲେ । ରାଗରେ ବୁଲି ପଡ଼ୁ ପଡ଼ୁ କିଏ ତାଙ୍କର ଡାହାଣ କାନକୁ ଭିଡ଼ି ଧରି ଅତି ଦୟନୀୟ ଭାବରେ ଦୁଇ ଥର ବୁଲେଇ ବୁଲେଇ ମାଟିଉପରେ ତାଙ୍କୁ ଦୁମ୍ କରି କଚାଡ଼ି ଦେଲା । ଆହାଃ, ସେ ଗର୍ବୀ ଜମିଦାର ବିଚରା କାଦୁଅ ଭିତରେ ପଡ଼ିଥିବାବେଳେ କି ମଉଜିଆ ସେ ଦୃଶ୍ୟ ॥ ଏପରିକି ଡରୁଆ ଗାଁ ଲୋକେ ବି ହସି ହସି ଗଡ଼ିଗଲେ ।

ଖୁସି ହୋଇ ଓଟୋକୋ ଆନନ୍ଦରେ ସୁସୁରି ମାରି ମାରି ଆଗକୁ ଆଗକୁ ଚାଲିଲା । କେତେ ପାହୁଣ୍ଡ ଯାଇଚି କି ନାହିଁ, ଦେଖିଲା ଜଣେ ଶ୍ରମିକ ତା' କାଖତଳେ ପୁଟୁଳା-ଟିଏ ଧରି ଯାଉଚି । ଓଟୋକୋ ତା' ପାଖକୁ ଦୌଡ଼ି ଯାଇ ସେ ପୁଟୁଳାଟି ଭିଡ଼ିଧରି ତା' ଭିତରୁ ହଳେ ଚକଚକିଆ ଧଳା ମୋଜା ଟାଣି ଆଣିଲା । ତାର ନୂଆ ମୋଜା ହଳକ ତା' ପାଖରୁ କିଏ ଭିଡ଼ି ନେବା ଏବଂ ସେ ମୋଜା ପୁଣି ଯାଇଁ ଯାଇଁ ଉଡ଼ି ଉଡ଼ି ଶେଷରେ କାଦୁଅ ଖାଲରେ ପଡ଼ିଯିବା ଦେଖି ଶ୍ରମିକଟି କେତେ ଭୟଭୀତ ଆଉ ବିସ୍ମିତ ହୋଇଥିବ ଅନୁମାନ କରି ପାରୁଚ ?

"ମୋ ମୋଜାକୁ ଭୂତ ଲାଗିଛି ବୋଲି ଚିତ୍କାର କରି କରି ସେ ରାସ୍ତାରୁ ଗଡ଼ି ପଳାଇଲା

ନିଜର କୃତିତ୍ୱରେ ଓଟୋକୋ ଆନନ୍ଦିତ ହେଲା । ଏହାପରେ ଆଉ କ'ଣ କରିବ ବୋଲି ଚାରିଆଡ଼କୁ ସେ ଆଗ୍ରହରେ ଆଖି ବୁଲାଇଲା । ଶେଷକୁ ଗୋଟିଏ ପ୍ରାଥମିକ ସ୍କୁଲ ଉପରେ ତା'ର ଦୃଷ୍ଟି ପଡ଼ିଗଲା । ଚଟାପଟ ସେ ଶ୍ରେଣୀ ଭିତରକୁ ପଶିଗଲା । ଶିକ୍ଷକ ଦରଜା ଆଡ଼କୁ ପିଠି କରି କଳାପଟାରେ ଲେଖୁଥିଲେ । ଧୀରେ ଧୀରେ ସେ

୨ ଯୁକ୍ତ ୨ ଲେଖିଲେ। ମିଶାଣ ଫଳ ଲେଖିବା ପୂର୍ବରୁ ଓଟୋକୋ କଳାପଟାରେ ଅଙ୍କାବଙ୍କା କରି ଲେଖିଦେଲା ୫।

ଆଶ୍ଚର୍ଯ୍ୟ ହୋଇ ଶିକ୍ଷକ ମୁଣ୍ଡ କୁଣ୍ଡାଇଲେ। ପିଲାମାନେ କଳାପଟାକୁ, ତା'ପରେ ସେମାନଙ୍କ ହାତକୁ ଓ ତା' ପରେ ପୁଣି କଳାପଟାକୁ ନିରେଖି ଚାହିଁଲେ। କେତେକେ ଆଙ୍ଗୁଠିରେ ଗଣିବାକୁ ଲାଗିଲେ।

ଶିକ୍ଷକ ଗୁଣୁ ଗୁଣୁ ସ୍ୱରରେ କହିଲେ, ''ମୁଁ ଜାଣୁଛି ମିଶାଣ ଫଳ ଚାରି ହେବ କିନ୍ତୁ କଳାପଟାରେତ ପାଞ୍ଚ ବୋଲି ଲେଖା ଅଛି।''

ସେ ପୁଣି ମୁଣ୍ଡ କୁଣ୍ଡାଇଲେ। ''କାହାକୁ ବିଶ୍ୱାସ କରିବି ? ମୋ ବିଦ୍ୟା ବୁଦ୍ଧି ଯାହା କହୁଛି ନା ଯେଉଁ ଲେଖାକୁ ମୁଁ ଦେଖୁଛି ??''

ଓଟୋକୋ ତାଙ୍କ କାନ ପାଖରେ ଫୁସ୍ ଫୁସ୍ କରି କହିଲା, ''ମିଶାଣ ଫଳ ପାଞ୍ଚ।''

ଏହା କହି ସେ ଖୋଁ ଖୋଁ ହସି ଘରୁ ବାହାରି ଦୌଡି ପଳାଇଲା।

ଶ୍ରେଣୀ ଘର ଭିତରେ କି ଗୋଳମାଳ ଲଗାଇ ସେ ଚାଲି ନ ଗଲା !! ପିଲାମାନେ ନିଜନିଜ ଭିତରେ କଳିକଜିଆ, ତର୍କ ବିତର୍କ ଆରମ୍ଭ କରିଦେଲେ। କିଏ କହିଲା,



ମିଶାଣ ଫଳ ଚାରି । ଆଉ କିଏ କହିଲା, ନା ନା, ପାଞ୍ଚ । କିଏ କହିଲା, ଛେନାଟା କହୁଛି । ମିଶାଣ ଫଳତ ଛଅ ।

ଗୋଟାଏ ଓ୍ୱମୋଟା ଟିକି ପିଲା ସତି ହାତର ଦୁଇ ଆଙ୍ଗୁଠି ଉପରକୁ ଟେକି କହିଲା, "ଆଚ୍ଛା କେତେ ହେଲା କହିଲ ?"

ଆଉ ଜଣେ ପିଲା ବୋବାଳି ଛାଡ଼ି କହିଲା, "ଆଠ । ତୋ' ଆଙ୍ଗୁଠି ଗୁଡ଼ାକ ଏତେ ମୋଟା ଯେ ଗୋଟିଏ ଆଙ୍ଗୁଠି ଦୁଇଟି ଆଙ୍ଗୁଠି ସଙ୍ଗେ ସମାନ ।" ଜିଭ ଦେଖାଇ ସେ ଖତେଇ ହେଲା । ମୋଟା ପିଲାଟା ରାଗରେ ଚିତ୍କାର କଲା ।

ଦୁଷ୍ଟ ଓଟୋକୋ ଦୁଷ୍ଟାମୀରୁ ଟିକିଏ ଫୁରୁସତ୍ ନେବାକୁ ଘରକୁ ଦୌଡ଼ିଲା । ଦେହରୁ କୋଟ୍ କାଢ଼ି ପକାଇଲା । ସଞ୍ଜବେଳକୁ ପୁଣି ଆଉ ଅଧିକ ଦୁଃସାହସିକ କାର୍ଯ୍ୟ କରିବାକୁ ହେବ । ସେଥିପାଇଁ ଦେହ ମନକୁ ସତେଜ କରି ନେବାକୁ ସେ ଟିକିଏ ଢୁଳେଇବାଲାଗି ଠିକ୍ କଲା । ସେ ଶୋଇଥିବା ବେଳେ ତା'ର ମାଆ ଘର ଭିତରକୁ ଆସି ଦେଖିଲେ ଗୋଟିଏ ନଡ଼ା କୋଟ୍ ଚୌକୀ ପଛରେ ଝୁଲୁଛି ।

ସେ ଘୃଣାରେ କହିଲେ, "ଛିଃ, କି ଅସନା କୋଟ୍‌ଟା ।" ତାକୁ ଉଠାଇ ଧରି ରୋଷେଇ ଘର ଭିତରକୁ ଗଲେ ଆଉ ନିଆଁ ଭିତରକୁ ପୂରାଇଦେଲେ ।

ମା କ'ଣ କଲେ ଜାଣିପାରି ଓଟୋକୋ ରାଗରେ ପଞ୍ଚମ ହୋଇଗଲା । ତମ ତମ ହୋଇ ସେ ପାଉଁଶତକ ଧରି ବଗିଚାର ଗୋଟିଏ କୋଣକୁ ଗଲା । ସେଠି ସେ ପାଉଁଶ ତକ ତାର ସର୍ବାଙ୍ଗରେ ଘଷିବାକୁ ଲାଗିଲା । କ୍ରମେ କ୍ରମେ ସେ ଅଦୃଶ୍ୟ ହୋଇଗଲା । ଯେତେବେଳେ ତାର ଆଉ ଚିହ୍ନବର୍ଣ୍ଣ ରହିଲା ନାହିଁ, ସେ ଗାଁ ଆଡ଼କୁ ଡେଇଁ ଡେଇଁ ଚାଲିଲା । ପାନ୍ଥଶାଳାଗୁଡ଼ିକରୁ ସେ ହସ ଓ କଥାବାର୍ତ୍ତା ଶୁଣିବାକୁ ପାଇଲା । ଖାଦ୍ୟର ସୁଗନ୍ଧ ତା' ନାକରେ ବାଜିଲା । ଭୋକରେ ତା' ପେଟ ଆଉଟ୍‌ପାଉଟ୍ ହେଉଥାଏ । ସବୁଠାରୁ ଗହଳୀ ହୋଟଲ ଭିତରକୁ ପଶି ଯାଇ ସେ ଧୈର୍ଯ୍ୟ ଧରି ଅପେକ୍ଷା କରି ରହିଲା । ସମସ୍ତେ ବାସ୍ନାଭରା ସୁସ୍ୱାଦୁ ସୁରୁଆ ଖାଇବା ଆରମ୍ଭ କଲା କ୍ଷଣି ସେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ସୁରୁଆ ପାତ୍ରରେ ମୁହଁ ଲଗାଇଦେଲା । ରଙ୍କ ଭଳି ସେ ସୁରୁଆ ପିଇବାକୁ ଲାଗିଲା । ହୋଟେଲ ମାଲିକର କୁକୁର ତାକୁ କୌଶଳରେ ଶୁଙ୍ଘି ଶୁଙ୍ଘି ତା' ଓଠକୁ ଚାଟିଲା । ଶୂନ୍ୟଟାକୁ ଚାଟିବା ଭଳି ଦିଶୁଥିବା କୁକୁରଟାକୁ ଦେଖିବାକୁ ସମସ୍ତେ ମୁହଁ ବୁଲାଇଲେ ।

ସୁରୁଆ ପାତ୍ରର ଅତି ପାଖରେ କେଉଁଠୁ ସେମାନେ ଢକ ଢକ ପିଇବା ଶବ୍ଦ ଶୁଣି ପାରିଲେ । ହଠାତ୍ ସୁରୁଆ ପାତ୍ର ପାଖରେ ଦୁଇଟି ନାଲିଆ ଫୁଟୁକା ଓଠ ଦେଖାଗଲା । ଓଠରୁ ସୁରୁଆ ଝୋଳ ବୋହି ପଡ଼ୁଥିଲା । ଦେଖଣାହାରୀମାନେ ଆଶ୍ଚର୍ଯ୍ୟ ହୋଇ ଓଠ ତଳେ ଚିବୁକଟିଏ ଦେଖିବାକୁ ପାଇଲେ । ତା' ପରେ ଅତି ନାଲି ରଙ୍ଗର ନାକଟିଏ ।

କେହି ଜଣେ ଚିତ୍କାର କରି ଉଠିଲା, "ସଇତାନ--ସଇତାନ ।"

ହୋଟେଲ ମାଲିକ କହିଲା, "ଭୂତ ହେଉ ସଇତାନ ହେଉ, ମୋ ସୁରୁଆତକ ଖାଇଦେଇ କେହି ମୋ ହାତରୁ ଖସି ଯାଇ ପାରିବ ନାହିଁ ।"

ଏହା କହି ସେ ଗୋଟାଏ ଠେଙ୍ଗା ଉଠାଇ ମୁହଁ ନ ଥିବା ସେଇ ନାଲିଆ ନାକ ତଳେ ବୁଲାଇଲା ।

ଓଟୋକେ କୁଦି ପଡି ଭୟରେ ଚିତ୍କାର କରି ବାହାରକୁ ଦୌଡି ପଳାଇଲା । ସମସ୍ତେ ତା ପଛେ ପଛେ ଧାଇଁଲେ । ହୋଟେଲ ମାଲିକ ମଧ୍ୟ ଓଟୋକୋର ପଛରେ ଦୌଡିଲେ ।



ରାସ୍ତାରେ ଦୌଡ଼ି ଦୌଡ଼ି ଓଟୋକୋ ଝାଳନାଳ ହେବାକୁ ଲାଗିଲା, ପରିଣାମ ଅତି ସାଙ୍ଘାତିକ ହେଲା । ଦେଖ ତ, ଶୁଖିଲା ଥିବା ଯାଏ ପାଉଁଶର ସବୁ ଗୁଣ ଥିଲା ଓଦା ହେବା କ୍ଷଣି ତାର ସବୁ କୁହୁକ ଶକ୍ତି କୁଆଡେ ଉଭେଇ ଗଲା । ଦୌଡ଼ି ପଳାଉ ଥିବା ଓଟୋକୋ ଝାଳରେ ଭିଜି ଅଧା ଚିତ୍ର କରା ହୋଇଥିବା ଛବିଟିଏ ପରି ଦିଶିଲା ।

ଭୟରେ ବୁଦ୍ଧି ଜ୍ଞାନ ହରାଇ ସେ ଆହୁରି ବେଗରେ ଦୌଡ଼ିବାକୁ ଲାଗିଲା । ଶେଷରେ ଝରଣା ଉପର ପୋଲ ପାଖରେ ପହଞ୍ଚି ପାଣିକୁ ଡେଇଁ ପଡ଼ିଲା । ପୋଲ ଧାରରେ ଅନେଇଁ ଥିବା ଲୋକେ ଠିକ୍ ପରେ ପରେ ଦେଖିବାକୁ ପାଇଲେ ସେଇ ଘୁର୍ଆ ପିଇଥିବା ସଇତାନ ହେଉଛି ଓଟୋକୋ ।

ବିଚରା ଅଭାଗା ଓଟୋକୋ ପାଣିରୁ ଟଣା ହୋଇ ଆସିଲା । ନଡାକୋଟ ଗପଟି କହିବାକୁ ତାକୁ କୁହାଗଲା । ସମସ୍ତେ ଶୁଣି ହସି ହସି ଗଡ଼ିଗଲେ ।

ସେମାନେ ପାଟିକରି କହିଲେ, ''ହଇରେ ପାଗଳା ଛୋଟବୁଦ୍ଧିଆ । ତୁ କ'ଣ ଜାଣୁନା ଟେଙ୍ଗୁକୁ ତୁ କେବେ ଠକି ପାରିବୁ ନାହିଁ । ସେମାନଙ୍କ ଧନ୍ଦାରେ ଅଯଥାରେ ତୋର ନାକ ପୂରାଇବା ଉଚିତନୁହେଁ । ଲମ୍ବରେ ତୋ ନାକ ସେମାନଙ୍କର ଅଧା ବି ନୁହେଁ ।''

ଏହି ଘଟଣା ଉପରେ ବହୁଦିନ ଯାଏ ଗାଁ ଲୋକଙ୍କ ହସ କୌତୁକ ଚାଲିଲା । ସମସ୍ତେ ଏକଥା ଅଳ୍ପ ଦିନରେ ଭୁଲିଯିବେ, ଏଇ ଆଶାରେ ବିଚରା ଓଟୋକୋ ଘରୁ ବାହାରିଲା ନାହିଁ । ବୋଧହୁଏ ସେମାନେ ଭୁଲି ଯିବେଣି । ହେଲେ ମୁଁ ନିଶ୍ଚିତ ଭାବେ କହିବି ଯେ ତୁମେ, ମୁଁ ଆଉ ସେ ଟେଙ୍ଗୁ ଆହୁରି ଅନେକ ଦିନ ଯାଏ ହସୁଥିବା ।



